# ଭକ୍ତଚରଣ
ଓ
# ମଥୁରାମଙ୍ଗଳ

ଅଧ୍ୟାପକ ଶ୍ରୀ ଗୌରୀକୁମାର ବ୍ରହ୍ମା

# ଭକ୍ତଚରଣ ଓ ମଥୁରାମଙ୍ଗଳ

ଲେଖକ—

ଶ୍ରୀ ଗୌରୀକୁମାର ବ୍ରହ୍ମା, ଏମ୍. ଏ., ବି. ଇଡ଼ି.

ଅଧ୍ୟାପକ, ରେଭେନ୍ସା କଲେଜ, କଟକ

ପ୍ରଥମ ମୁଦ୍ରଣ—୧୦୦୦

—୧୯୫୭—

ମୂଲ୍ୟ—ଏକ ଟଙ୍କା

ପ୍ରକାଶକ—

**ପୁସ୍ତକ ମହଲ**

ବରଫା ବଜାର, କଟକ

# ଲେଖକର ନିବେଦନ

ଭକ୍ତକବି ମଧୁସୂଦନଙ୍କ ଶ୍ରେଷ୍ଠ ଗୀତିଗୁଚ୍ଛ କୁସୁମାଞ୍ଜଳି, ଗଙ୍ଗାଧରଙ୍କ ଶ୍ରେଷ୍ଠ କାବ୍ୟ ତପସ୍ୱିନୀ ଓ ଦୀନକୃଷ୍ଣଙ୍କ ଉତ୍କଳ-ବିଖ୍ୟାତ ରସ କଲ୍ଲୋଳର ଆଲୋଚନା ପୁସ୍ତକ ଆକାରରେ ପ୍ରକାଶ ପାଇବା ପରେ ବନ୍ଧୁ ସାହିତ୍ୟିକ ବନ୍ଧୁ ଓ କଲେଜ ଛାତ୍ର ଭକ୍ତଚରଣଙ୍କ ମଥୁରାମଙ୍ଗଳ ଉପରେ ଗୋଟିଏ ତାଦୃଶ ପୁସ୍ତକ ପ୍ରଣୟନ କରିବାକୁ ଅନୁରୋଧ କରିଥିଲେ । ସେମାନଙ୍କ ସସ୍ନେହ ପରାମର୍ଶ ଓ ଅନୁରୋଧରେ ଏ ପୁସ୍ତକ ପ୍ରକାଶ କଲି । ମଥୁରାମଙ୍ଗଳ କଲେଜରେ ପଢ଼ାଯାଉଛି । ଯଦିଓ କେବଳ ଛାତ୍ରମାନଙ୍କ ହିତ ଦୃଷ୍ଟିରୁ ମୁଁ ମଥୁରାମଙ୍ଗଳର ବିଶ୍ଳେଷଣ କରିନାହିଁ, ତଥାପି ସର୍ବ ପ୍ରଥମେ ସେହି-ମାନେହିଁ ଯେ ଏହାର ସଦୁପଯୋଗ କରିବେ, ଏହା ମୁଁ ବିସ୍ମୃତ ହୋଇ ନାହିଁ । ସୁତରାଂ ଏଥିରେ କେତେଗୋଟି ମୁଖ୍ୟ ବିଷୟର ବିଚାର କରିଛି ମାନ । ଭକ୍ତଚରଣଙ୍କର ଅନ୍ତର ପରୀକ୍ଷା ଓ ମହତ୍ତ୍ୱ ପ୍ରଦର୍ଶନ କରିବାରେ ମୁଁ କେତେଦୂର କୃତକାର୍ଯ୍ୟ ତାହା ଜାଣେନା; ତେବେ ଏଥିରେ ଅନୁପ୍ରାଣିତ ହୋଇ ଯଦି କେହି ତାହାଁର ପୂର୍ଣ୍ଣାଙ୍ଗ ଆଲୋଚନା କରିବାକୁ ଉଦ୍ୟତ ହୁଏ, ବିଶେଷ ଆନନ୍ଦିତ ହେବି । ଇତି

ଲେଖକ

ପ୍ରବୀଣ ସାମ୍ବାଦିକ ଓ ସାହିତ୍ୟିକ

ଉତ୍କଳର ଶିକ୍ଷା-ସଚିବ

ଶ୍ରୀଯୁକ୍ତ ରାଧାନାଥ ରଥ ମହୋଦୟଙ୍କର

କରକମଳରେ—

# ସୂଚୀ

# କବି ପରିଚୟ

## କବିଙ୍କ ପ୍ରକୃତ ଓ ପ୍ରଚାରିତ ନାମ:—

ମଧ୍ୟ ଯୁଗର ଓଡ଼ିଆ ସାହିତ୍ୟ ବହୁମୁଖୀ କବି ପ୍ରତିଭାର ବିଚିତ୍ର ବିଳାସରେ ଚିର-ଉଜ୍ଜ୍ୱଳ । ପଞ୍ଚଦଶ ଶତାବ୍ଦୀର ସ୍ୱନାମଧନ୍ୟ ଶ୍ରେଷ୍ଠ ଜାତୀୟ କବି ଶାରଳା ଦାସଙ୍କ ଠାରୁ ବିଂଶ ଶତାବ୍ଦୀ ପ୍ରାକ୍‌କାଳର ଉଦାର ଦେଶପ୍ରେମୀ ଓ ବରେଣ୍ୟ ବହୁଜ୍ଞ ରାଧାନାଥଙ୍କ ପର୍ଯ୍ୟନ୍ତ ଉତ୍କଳ ଜନନୀ ବହୁ କବି-ସନ୍ତାନ ପ୍ରସବ କରିଥିଲେ—ଯେଉଁମାନଙ୍କର ବିପୁଳ ଦାନରେ ପ୍ରାଚୀନ ଓଡ଼ିଆ ସାହିତ୍ୟ ସମୃଦ୍ଧ ହୋଇ ଉଠିଥିଲା । ରାଧାନାଥଙ୍କ ଅଭ୍ୟୁଦୟ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟ ଥିଲା ପ୍ରାୟଶଃ ଦେବ୍ୟମୟ । କବିମାନେ, ନାନାବିଧ ପ୍ରତିବନ୍ଧକର ସମ୍ମୁଖୀନ ହୋଇ ମଧ୍ୟ, ସ୍ୱୀୟ ଧାର୍ମିକ ମତବାଦର ପ୍ରଚାର କିମ୍ବା ପାଣ୍ଡିତ୍ୟ-ବିଳସିତ କବି ପ୍ରତିଭା ପ୍ରଦର୍ଶନ କରିବାକୁ ବାଣୀ ଆରାଧନାରେ ଆତ୍ମନିୟୋଗ କରୁଥିଲେ । ଆହୁରି ମଧ୍ୟ ଏଠାରେ ସ୍ମରଣୀୟ, କବିମାନଙ୍କର ତରଳ ଲେଖନୀ ନିଃସୃତ ଅମିୟ କବିତାର ମାଦକତାରେ ଦେଶବାସୀ ଏତେଦୂର ବିହ୍ୱଳ ହୋଇ ପଡ଼ିଥିଲେ ଯେ ବୋଧହୁଏ ସେମାନଙ୍କର ଜୀବନୀ ବା ଇତିହାସ ଲିପିବଦ୍ଧ କରିବାକୁ ସେମାନଙ୍କୁ ଅବସର ମିଳୁ ନ ଥିଲା !! ପ୍ରକୃତ କଥା ହେଉଛି, ଭାରତବାସୀ କୌଣସି ଯୁଗରେ ସୁଦୃଢ଼ ଐତିହାସିକ ମନୋବୃତ୍ତି ପ୍ରଦର୍ଶନ କରି ନାହାନ୍ତି । ଭାରତବାସୀ ଜନସାଧାରଣ ହୁଏ ତ କୌଣସି କାବ୍ୟ ପିତାଙ୍କର ପ୍ରକୃତ

ପରିଚୟ ପାଇ ନାହାନ୍ତି, ତଥାପି ତାଙ୍କ ଲେଖାର ମାଧୁର୍ଯ୍ୟ ଉପଲବ୍ଧି କରି ନିଜର ରସପିପାସା ମେଣ୍ଟାଇବାକୁ କେବେହେଲେ ପଶ୍ଚାତ୍‌ପଦ ହୋଇ ନାହାନ୍ତି । ଆଜି ଯେ ମଥୁରାମଙ୍ଗଳ ଲେଖକଙ୍କ ଜୀବନୀ ଇତିହାସର ଘନାନ୍ଧକାର ମଧ୍ୟରେ ଲୁଚିରହିଛି, ତାହାର ମୂଳରେ ଏହି ମନୋବୃତ୍ତିହିଁ ବିଦ୍ୟମାନ । ଆଶ୍ଚର୍ଯ୍ୟର ବିଷୟ, ସ୍କୁଲ ବହିପତ୍ରରେ କବିଙ୍କ ନାମ ପର୍ଯ୍ୟନ୍ତ ଛାପିବାକୁ ଲୋକେ ଚେଷ୍ଟା କରି ନାହାନ୍ତି । କବି ଶାରଳା ଦାସଙ୍କ ଉଚ୍ଚ ଆସନ ଓଡ଼ିଶାରେ କାହାର ହୃଦୟରେ ପ୍ରତିଷ୍ଠିତ ହୋଇ ନାହିଁ ? ଅଥଚ ସିଦ୍ଧେଶ୍ୱର ପରିଡ଼ା (ଶାରଳାଙ୍କ ପ୍ରକୃତ ନାମ) ଉତ୍କଳ ଭୂମିରେ ଅଖ୍ୟାତ ଓ ଅଜ୍ଞାତ ରହିଗଲେ । ସେହିପରି ବିଖ୍ୟାତ ବିଦଗ୍ଧ ଚିନ୍ତାମଣି ଲେଖକ ଅଭିମନ୍ୟୁଙ୍କ ଗୁରୁ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ପାଠକଶ୍ରେଣୀର ସୁପରିଚିତ । କିନ୍ତୁ ସାଧୁଚରଣ ଦାସ (ସଦାନନ୍ଦଙ୍କ ନାମ) ଆଦୌ ପରିଚିତ ନୁହନ୍ତି । ବୈରାଗିଚରଣ ପଟ୍ଟନାୟକ କୌଣସି କାବ୍ୟର ଲେଖକ ରୂପେ ପ୍ରତିଷ୍ଠା ଲାଭ କରି ନାହାନ୍ତି । ମାତ୍ର ମନବୋଧ ଚଉତିଶା, କଳାକଳେବର ଚଉତିଶା ଓ ମଥୁରାମଙ୍ଗଳର ଲେଖକ, ଭକ୍ତକବି ଭକ୍ତଚରଣଙ୍କୁ ଉତ୍କଳରେ ନ ଜାଣେ କିଏ ? ମଧ୍ୟ ଓ ପ୍ରାଚୀନ ଯୁଗର ବହୁ କବି ଧର୍ମ-ଦୀକ୍ଷା ଗ୍ରହଣ ପରେ ନିଜନିଜର ପିତୃଦତ୍ତ ନାମ ବଦଳରେ ଭକ୍ତି ସୂଚକ ଗୋଟିଏ ଗୋଟିଏ ନୂତନ ନାମରେ ପରିଚିତ ହେଉଥିଲେ । ଏ ପ୍ରକାର ନାମ କରଣ ଥିଲା କବିଙ୍କ ବ୍ୟକ୍ତିତ୍ୱର ପରିଚାୟକ, ଗଭୀର ଭକ୍ତିର ପ୍ରତିପାଦକ ଏବଂ ମନୋବୃତ୍ତିର ପରିମାପକ । ଭକ୍ତ ପ୍ରିୟ ଭଗବାନ ନାରଦଙ୍କୁ କହିଅଛନ୍ତି—"ହେ ନାରଦ ଯେଉଁଠାରେ ମୋର ଭକ୍ତମାନେ ମତେ ସ୍ମରଣ କରନ୍ତି ବା ସ୍ତୁତି କରୁ ଥାଆନ୍ତି, ସେଠାରେହିଁ ମୁଁ ଥାଏ ।" ଦୀକ୍ଷା ଗ୍ରହଣ ପରେ ବୈରାଗି ଚରଣ ପଟ୍ଟନାୟକ ଭକ୍ତଚରଣ ଦାସ ନାମ ଗ୍ରହଣ କଲେ । ଏ ନାମର ସାର୍ଥକତାରେ କବିଙ୍କ ବ୍ୟକ୍ତିତ୍ୱ ପ୍ରତିଫଳିତ । ଭଗବାନ୍ ଭକ୍ତମାନଙ୍କୁ ଅନୁସରଣ କରୁଥିବାରୁ କବି ପ୍ରଥମେ ଭଗବଦ୍-ଭକ୍ତ ମାନଙ୍କର ପାଦସେବକ ବା ଚରଣ-ଦାସ ରୂପେ ନିଜକୁ ମନେ କରି ଭକ୍ତି ବଳରେ ବିଭୁ ସାନ୍ନିଧ୍ୟ ଲାଭକରିବାକୁ ବଳବତୀ ଇଚ୍ଛା ପୋଷଣ କରିଅଛନ୍ତି ।

## କବିଙ୍କ ଜନ୍ମ ସ୍ଥାନ ଓ ଜୀବନୀ:—

ଭକ୍ତ ଚରଣଙ୍କ ଜନ୍ମସ୍ଥାନ ଏ ପର୍ଯ୍ୟନ୍ତ ନିରୂପିତ ହୋଇ ନାହିଁ । ତଥାପି ସ୍ୱର୍ଗତ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀ ଯେଉଁ ତଥ୍ୟ ସଙ୍କଳନ କରିଥିଲେ, ତହିଁରୁ କବିଙ୍କ ଜୀବନର କେତେ ଗୋଟି ବିଶିଷ୍ଟ ଘଟଣାର ଆଭାସ ମିଳେ । ରଣପୁର ଅନ୍ତର୍ଗତ ସୁନାଖଳା ଗ୍ରାମରେ କବି ଜୀବନର ସୁଦୀର୍ଘ ସମୟ ଅତିବାହିତ କରିଥିଲେ । ଦଶପଲ୍ଲାରେ ଅବସ୍ଥାନ କଲା ବେଳେ ରାଜାଙ୍କ ସଙ୍ଗେ ତାଙ୍କର ମତାନ୍ତର ଓ ମନାନ୍ତର ଘଟିଥିଲା । ରାଜାଙ୍କ ଅନୁଚରମାନେ ତାଙ୍କ ଉପାସ୍ୟ ଦେବ ପ୍ରତିମାକୁ ନଦୀ ଗର୍ଭରେ ନିକ୍ଷେପ କରି ଦେଇଥିଲେ । ଏ ଦୁର୍ଘଟଣା ପରେ ସେ ବାଧ୍ୟ ହୋଇ ସେଠାରୁ ସ୍ଥାନାନ୍ତର ଯାତ୍ରା କରିଥିଲେ । ଆଜି ସୁଦ୍ଧା ଖୋରଧା, ବାଣପୁର ଓ ଦଶପଲ୍ଲାଠାରେ ସେ ପ୍ରତିଷ୍ଠା କରି ଯାଇଥିବା ମଠ ଗୁଡ଼ିକ ତାଙ୍କ ଜୀବନ-ବ୍ୟାପୀ ସାଧନାର ମୂକ ସାକ୍ଷୀ ରୂପେ ଦଣ୍ଡାୟମାନ ହୋଇଅଛି । ଓଡ଼ଗାର ରାଜା, ଦିବ୍ୟସିଂହ ଦେବଙ୍କ ଭଗିନୀ କବିଙ୍କ ସାଧନାରେ ସନ୍ତୁଷ୍ଟ ହୋଇ ସାନପଦର ଗ୍ରାମରେ (ଖୋରଧା ନିକଟବର୍ତ୍ତୀ) ପ୍ରତିଷ୍ଠିତ ଗୋଟିଏ ମଠର ପରିଚାଳନା ପାଇଁ ସମସ୍ତ ବ୍ୟବସ୍ଥା କରି ଦେଇଥିଲେ । ସେ କବିଙ୍କୁ ନିଜର ଧର୍ମଗୁରୁ ରୂପେ ଗ୍ରହଣ କରିଥିଲେ ।

ଲୋକ ମୁଖରୁ ଶୁଣାଯାଏ, କବି ଖର୍ବ କାୟ ଓ ଶ୍ୟାମଳବର୍ଣ୍ଣ ଥିଲେ । ପଦବ୍ରଜରେ ସେ ଭାରତର ବହୁତୀର୍ଥ ପରିଭ୍ରମଣ କରିଥିଲେ । ଏଥିରୁ ତାଙ୍କର ଧର୍ମପ୍ରାଣତା, ଶାରୀରିକ ଶକ୍ତି ଓ ମାନସିକ ଦୃଢ଼ତାର ସୂଚନା ମିଳେ । ସେ କେବଳ ସୁ-କବି ନଥିଲେ—ସୁ-ଚିକିତ୍ସକ ରୂପେ ମଧ୍ୟ ଖ୍ୟାତି ଅର୍ଜ୍ଜନ କରିଥିଲେ । ବହୁ ଅନୁଭୂତି ଓ ଘାତ ପ୍ରତିଘାତ ପରେ ସେ ମଥୁରା ମଙ୍ଗଳ ରଚନା କରିଥିବା ଅନୁମିତ ହୁଏ । ସେ ମଥୁରାମଙ୍ଗଳ ପ୍ରଥମ ଛାନ୍ଦରେ ଲେଖିଛନ୍ତି—

ମୋହ ତୋହିତ ଜଳା ଦିବାନିଶି
ମର୍ମେ ଘୋଟି ରହିଲା ପାପରାଶି

ଚଳ ନୃହରି ଯାତନାରେ ପଡ଼

ଧନୁ ଧନୁ ଆୟୁଷ ଗଲା ଛଡ଼ ।

ଏଥିରୁ କବିଙ୍କ ସଂସାର-ବିମୁଖତା ଓ ଭକ୍ତିମୟ ଜୀବନ ଯାପନ ପାଇଁ ବ୍ୟାକୁଳତା ପ୍ରକାଶ ପାଏ । ଭର୍ତ୍ତୃହରିଙ୍କ ବିଖ୍ୟାତ 'ବୈରାଗ୍ୟ ଶତକ' ପାଠ କଲେ ଯେପରି କବିଙ୍କ ଗଭୀର ଅନୁଭୂତିର ପରିଚୟ ମିଳେ, ସେହିପରି ଭକ୍ତ ଚରଣଙ୍କ ମନବୋଧ ଚଉତିଶା ପାଠରୁ ତାଙ୍କ ସଂସାର ବିରକ୍ତି ଓ ବିମଳ ବ୍ୟାଖ୍ୟାନ ଶକ୍ତିର ପ୍ରମାଣ ଉପଲବ୍ଧ ହୁଏ । ଭଗବତ୍ କୃପାରୁ କବି ମୃତ୍ୟୁ ମୁଖରେ ପଡ଼ିବା ପୂର୍ବରୁ ତାହା ଜାଣିପାରିଥିଲେ । ଲୋକେ କହନ୍ତି, ମୃତ୍ୟୁର ଆଠଦିନ ପୂର୍ବରୁ ସେ ଶିଷ୍ୟମାନଙ୍କ ସଙ୍ଗେ ଶ୍ରୀକ୍ଷେତ୍ର ଯାତ୍ରା କରିଥିଲେ । ହରିନାମ କୀର୍ତ୍ତନ କରୁ କରୁ ତାଙ୍କର 'ବୃନ୍ଦାବନ ପ୍ରାପ୍ତି' ହୋଇଥିଲା ।

କବିଙ୍କ ଶିକ୍ଷାଦୀକ୍ଷା ଓ କବିତ୍ୱ:—

କବିଙ୍କ ଜୀବନୀ ଲିଖିତ ହୋଇ ନ ଥିବାରୁ ତାଙ୍କ ଶିକ୍ଷାଦୀକ୍ଷାର ସ୍ୱରୂପ ମଥୁରାମଙ୍ଗଳ ପ୍ରଭୃତି କାବ୍ୟର ଅନୁଶୀଳନରୁ ଅନୁମାନ ମାତ୍ର କରିବାକୁ ହେବ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ସେ ପରବର୍ତ୍ତୀ । ସେତେବେଳେ କବିମାନଙ୍କୁ ପ୍ରଥମେ ସଂସ୍କୃତ ଅଳଙ୍କାର, କାବ୍ୟ ନାଟକ ଓ ପୁରାଣ ପ୍ରଭୃତିରେ ପାଣ୍ଡିତ୍ୟ ଉପାର୍ଜନ କରିବାକୁ ପଡ଼ୁଥିଲା । ଭକ୍ତଚରଣଙ୍କର ଯେ ମୌଳିକ ଓ ବଳିଷ୍ଠ କାବ୍ୟ ପ୍ରତିଭା ଥିଲା, ଏଥିରେ ସନ୍ଦେହର ଅବକାଶ ନାହିଁ । ସଂସ୍କୃତ କାବ୍ୟ ନାଟକ ପ୍ରଭୃତି ସେ ଯେ ଅବଶ୍ୟ ପାଠ କରିଥିବେ ସେ ସମୟର ଶିକ୍ଷା ପଦ୍ଧତି ଆଲୋଚନା କଲେ ଏହା ଅସତ୍ୟ ପରି ପ୍ରତୀତ ହେବ ନାହିଁ । କବି ଭଞ୍ଜ ଯୁଗରେ ଜନ୍ମ ଗ୍ରହଣ କରିଥିଲେହେଁ ସ୍ୱାଧୀନତା ରକ୍ଷା କରି ନିଜ କାବ୍ୟରେ ଶବ୍ଦାଡ଼ମ୍ବର ଓ ଶାସ୍ତ୍ର ପାଣ୍ଡିତ୍ୟ ଦେଖାଇବାକୁ ବିଶେଷ ଚେଷ୍ଟା କରି ନାହାନ୍ତି । ହେଲେହେଁ ଅନୁପ୍ରାସ, ଉପମା, ଉତ୍ପ୍ରେକ୍ଷା ପ୍ରଭୃତିର ସମୁଚିତ ଓ ସଂଗତ ପ୍ରୟୋଗ କରି ଯଥେଷ୍ଟ ବିଚକ୍ଷଣଶୀଳତା

ଦେଖାଇଛନ୍ତି । ଅନ୍ୟାନ୍ୟ ଗ୍ରନ୍ଥ ମଧ୍ୟରେ ବିପ୍ର ନାରାୟଣଙ୍କ ହରିବଂଶ, ଜଗନ୍ନାଥ ଦାସଙ୍କ ଭାଗବତ, ଅଚ୍ୟୁତାନନ୍ଦଙ୍କ ହରିବଂଶ ଓ ଦୀନକୃଷ୍ଣ ଦାସଙ୍କ ରସ କଲ୍ଲୋଳ ସେ ଉତ୍ତମ ରୂପେ ଅଧ୍ୟୟନ କରିଥିଲେ । ଏହି ଗ୍ରନ୍ଥମାନଙ୍କ ଦ୍ୱାରା ସେ କେତେ ଦୂର ପ୍ରଭାବିତ ତାହା ଅନ୍ୟତ୍ର ଆଲୋଚନା କରାଯାଇଛି ।

## କବିଙ୍କ ସାଧନା ଓ ସିଦ୍ଧି—

ପବିତ୍ର ଭାରତ ଭୂମିରେ ମୁନି ଋଷି ଓ ସିଦ୍ଧ ସାଧକ ମାନଙ୍କର ଅଦ୍ଭୁତ ଶକ୍ତି ବର୍ଣ୍ଣିତ ଥିବା ବହୁ ଗଳ୍ପ ଓ କିମ୍ବଦନ୍ତୀ ଶୁଣାଯାଏ । ପୁଣ୍ୟ ଭୂମି ଉତ୍କଳରେ ସେ ପ୍ରକାର କିମ୍ବଦନ୍ତୀର ସଂଖ୍ୟା ଆଦୌ ଅଳ୍ପ ନୁହେଁ । ଭକ୍ତଚରଣଙ୍କ ସଂପର୍କରେ ଗୋଟିଏ ଜନଶ୍ରୁତି ଅଛି । ଅନନ୍ତ ଶାଥିଆ ଭକ୍ତଚରଣଙ୍କ ଠାରୁ ଦୀକ୍ଷା ଗ୍ରହଣ କରିଥିଲେ । ସେ କିନ୍ତୁ ଗୁରୁଙ୍କ ଆଦେଶ ଲଙ୍ଘନକରି କହିଥିଲେ—(???)

"ବିନାୟକ ବିନା ଏକ ପଦ ମାତ୍ର ନ ସ୍ଫୁରଇ" ଅର୍ଥାତ୍ ଜଣେ ଶ୍ରୀକୃଷ୍ଣଭକ୍ତ ହୋଇ ମଧ୍ୟ ଯେବେ ସେ ବିଘ୍ନରାଜ ବିନାୟକଙ୍କୁ ଉପାସନା ନକରେ, ତାହାର ପଦେମାତ୍ର କବିତାର ସ୍ଫୁର୍ତ୍ତି ହେବନାହିଁ । ଭକ୍ତ-ଚରଣ ଏଥିରେ କ୍ରୁଦ୍ଧ ହୋଇ ଶାପ ଦେଇଥିଲେ :—

ଆରେ ଆରେ ଗୁରୁ ବିଦ୍ରୋହୀ
ତୋ ମୁଖ କେବେହେଁ ନରହିଁ ।

ଏହି ଅଭିଶାପରେ ଶାଥିଆ କୁଷ୍ଠ ରୋଗରେ ପୀଡ଼ିତ ହେଲେ । ପରେ ଗୁରୁଙ୍କ ସେବା କରି ତାଙ୍କର ପ୍ରସାଦ ବଳରେ ରୋଗରୁ ମୁକ୍ତ ହୋଇଥିଲେ ।

## କବିଙ୍କ ଜନ୍ମ କାଳ :—

କବିଙ୍କ ଜନ୍ମ ସମୟ, ( ଅନ୍ୟ ଅନେକ କବିଙ୍କ ପରି ) ସମ୍ବନ୍ଧରେ ନାନା ମୁନିଙ୍କର ନାନା ମତ ଦେଖାଯାଏ । ଓଡ଼ିଶାର ବହୁ

ପ୍ରାଚୀନ କବିଙ୍କର ସମୟ ଆଜି ଯାଏ ନିର୍ଣ୍ଣୟ କରାଯାଇ ପାରି ନାହିଁ । ତେବେ ନାନା ପ୍ରମାଣରୁ ଜଣାଯାଏ, ଭକ୍ତଚରଣ ଖ୍ରୀ: ୧୭୪୩ ରେ ଜନ୍ମ ଗ୍ରହଣ କରି ୮୫ ବର୍ଷ ବୟସରେ ଖ୍ରୀ: ୧୮୨୮ ରେ ଦେହ ତ୍ୟାଗ କରିଥିଲେ । ପରବର୍ତ୍ତୀ ଅଧ୍ୟାୟରେ ଏ ବିଷୟର ପୁଙ୍ଖାନୁପୁଙ୍ଖ ଆଲୋଚନା କରାଯାଇଛି । ଉକ୍ତ ସମୟ ଯଦିଓ ଅଭ୍ରାନ୍ତ ବୋଲି କୁହାଯାଇ ପାରିବ ନାହିଁ, ତଥାପି ଏହା ଯେ ସତ୍ୟର ଏକାନ୍ତ ନିକଟବର୍ତ୍ତୀ, ଏକଥା ସହଜରେ ଅସ୍ୱୀକାର କରାଯାଇ ପାରିବ ନାହିଁ ।

କବିଙ୍କ ଶ୍ରେଷ୍ଠ କାବ୍ୟ ମଥୁରାମଙ୍ଗଳ:—

ଉପରେ କବିଙ୍କର ଯେଉଁ ତିନିଗୋଟି ପୁସ୍ତକର ନାମ ଉଲ୍ଲେଖ କରାଯାଇଛି, ସେ ମଧ୍ୟରେ ମଥୁରା ମଙ୍ଗଳହିଁ ଶ୍ରେଷ୍ଠ । ଏ ତିନୋଟି ବ୍ୟତୀତ ସେ 'ଗୋପ ମଙ୍ଗଳ' ପ୍ରଭୃତି ଆଉ ଖଣ୍ଡିଏ ଦୁଇ ଖଣ୍ଡି ପୁସ୍ତକ ଲେଖିଥିଲେ ବୋଲି ଶୁଣାଯାଏ । ସେ ଯାହାହେଉ, ଉତ୍କଳର ପୁର ପଲ୍ଲୀରେ ତିନୋଟି-ଯାକ ବଡ଼ ଜନପ୍ରିୟ । ଇଂରାଜୀ ଶିକ୍ଷାପଦ୍ଧତିର ବହୁଳ ପ୍ରସାର ପର୍ଯ୍ୟନ୍ତ କବିଙ୍କ 'କଳାକଳେବର' ଚଉତିଶା ଶିଶୁମାନଙ୍କର ପ୍ରିୟପାଠ୍ୟ ଥିଲା । ମାତାପିତାମାନେ ପୁଅଝିଅଙ୍କ କଣ୍ଠରେ ଏ ଚଉତିଶାର ଆବୃତ୍ତି ଶୁଣିବାକୁ ବିଶେଷ ଆଗ୍ରହ ପ୍ରକାଶ କରୁଥିଲେ । ମନବୋଧ ଚଉତିଶାରେ ସଂସାରର ନିଃସାରତା ଓ ବିନଶ୍ୱରତା ପ୍ରତିପାଦିତ ହୋଇଅଛି । ଏହା କବିଙ୍କ ଶେଷ ଜୀବନରେ ବିରଚିତ ହୋଇଥାଇ ପାରେ । ମଥୁରାମଙ୍ଗଳ ସର୍ବଥା ପ୍ରୌଢ଼ ଅବସ୍ଥାର ରଚନା । ଏଥିରେ ଶ୍ରୀକୃଷ୍ଣଙ୍କର ଗୋପପୁରରୁ ମଥୁରାପୁର ଯାତ୍ରା ଓ ସେଠାରେ କଂସବଧ ବର୍ଣ୍ଣିତ ହୋଇଅଛି ।

ମଥୁରାମଙ୍ଗଳର ଶୁଦ୍ଧ ସଂସ୍କରଣ ଲୋଡ଼ା :—

ଏଠାରେ ଗୋଟାଏ କଥା ସ୍ମରଣ କରାଇଦେବା ଉଚିତ । ଆମ-ଦେଶରେ ଲେଖା ଯାଇଥିବା ଶହଶହ ପୁସ୍ତକ ଏ ପର୍ଯ୍ୟନ୍ତ ପ୍ରକାଶ ପାଇ-ନାହିଁ । ଶାରଳା ମହାଭାରତ, ଜଗମୋହନ ରାମାୟଣ ପ୍ରଭୃତି ପୁସ୍ତକ

ଯେଉଁମାନେ ପ୍ରଥମେ ମୁଦ୍ରିତ କଲେ ସେମାନେ ନାନାସ୍ଥଳରେ ମୌଳିକ ରଚନାକୁ ବିକୃତ କରିଦେଲେ । ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ପ୍ରକାଶକ-ମାନଙ୍କର ଏ ସ୍ୱେଚ୍ଛାଚାରିତା ଦେଖି ସେମାନଙ୍କ ପ୍ରତି ଯଥାର୍ଥରେ ଆକ୍ଷେପ କରିଛନ୍ତି । ଗୋଟିଏ ଗୋଟିଏ ପୁରୁଣା ତାଳପତ୍ର ପୋଥିରୁ ପାଠ ଉଦ୍ଧାରିବା-ବେଳେ ଲିପିକାର ( ଲେଖକ ) ମାନେ ଅନେକ ଭୁଲ କରି ପକାଇଛନ୍ତି । ସେହି କାରଣରୁ କବିଙ୍କ ଅନ୍ତରର ପ୍ରକୃତ ଭାବ ବୁଝିବାରେ ଘୋର ବାଧା ଉପସ୍ଥିତ ହେଉଅଛି । ଅନେକ ପ୍ରକାଶକ ମଥୁରାମଙ୍ଗଳ ପ୍ରକାଶ କରିଛନ୍ତି । ହେଲେହେଁ ପ୍ରାଚୀସମିତି ପକ୍ଷରୁ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସଂଶୋଧିତ ଓ ସଂପାଦିତ ହୋଇ ଯେଉଁ 'ମଥୁରାମଙ୍ଗଳ' ପ୍ରକାଶ ପାଇଛି ତାହା ସର୍ବାଧିକ ଅଶୁଦ୍ଧି-ରହିତ ବୋଲି କୁହାଯାଇ ପାରେ । ତଳେ ଦୁଇଟି ମାତ୍ର ଦୃଷ୍ଟାନ୍ତ ପ୍ରଦାନ କରାଯାଉଛି । ବଜାରରେ ମିଳୁଥିବା ଅନ୍ୟାନ୍ୟ ସଂସ୍କରଣ ଯଦିଓ ନାନା ଭ୍ରାନ୍ତିପୂର୍ଣ୍ଣ, ତଥାପି ପ୍ରାଚୀ ସଂସ୍କରଣ ସମ୍ପୂର୍ଣ୍ଣ ଦୋଷ-ରହିତ ଥିବା ପରି ଜଣା ଯାଉ ନାହିଁ ।

ପ୍ରଥମ ଉଦାହରଣ—

ତୀର୍ଥ ନ ଯାଇ ତୀର୍ଥ ବାସୀ ହୁଅ
ଧନ ନ ଥାଇ ଖୋଳୁଅଛ ଜୁଅ—୨୦ । ୧୯

ଏ ପାଠ ପ୍ରାଚୀ ସଂସ୍କରଣରେ ଅଛି । କିନ୍ତୁ ବଜାରର ଅନ୍ୟ ପୁସ୍ତକରେ ଅଛି—

ତୀର୍ଥ ନ ଯାଇ ତୀର୍ଥବାସୀ ହୁଅ
ଧନ ନ ଥାଇ ଖେଳୁଅଛ ଜୁଅ ।

ଏଠାରେ ଦ୍ୱିତୀୟ ପଂକ୍ତି ବିଚାରକଲେ ଜଣାଯାଏ, ଲୋକ ଧନ ନ ଥାଇ ଜୁଅ ଖୋଳି ପାରେ, କିନ୍ତୁ ଧନ ନ ଥାଇ ଜୁଅ ଖେଳିବାର କୌଣସି ମୂଲ୍ୟ ବା ସାର୍ଥକତା ନ ଥାଇ ପାରେ । ସୁତରାଂ "ଖେଳୁଅଛ ଜୁଅ" ପାଠ ଅଧିକ ଯୁକ୍ତିଯୁକ୍ତ ଓ ଅର୍ଥପୂର୍ଣ୍ଣ ମନେହୁଏ ।

୨ୟ ଉଦାହରଣ—

ପ୍ରାଚୀ ସଂସ୍କରଣରେ ଅଛି:—

ଆମ୍ଭର ଭଗତ ଗଙ୍ଗାଧର
ଜ୍ଞାନ ନଦୀ ତହିଁ ସମ କର-୨୨ । *

କିନ୍ତୁ ବଜାରର ଅନେକ ପୁସ୍ତକରେ ଅଛି—

ଆମ୍ଭର ଭଗତ ରତ୍ନାକର
ଜ୍ଞାନନଦୀ ତହିଁ ସମକର ।

ମଥୁରାମଙ୍ଗଳ ୨୨ ଛନ୍ଦରେ କବି ଭକ୍ତ ଓ ଜ୍ଞାନର ତୁଳନା କରି ଅନେକ ଉଦାହରଣ ଦେଇଛନ୍ତି । ସେ ସବୁଡ଼ିକରୁ ଜଣାଯାଏ, ଭକ୍ତ ଏତେ ବଡ଼ ଓ ଗମ୍ଭୀର ଯେ ତା ତୁଳନାରେ ଜ୍ଞାନ କିଛି ନୁହେ—ନିତାନ୍ତ କ୍ଷୁଦ୍ର । ବଜାରର ଅନ୍ୟାନ୍ୟ ବହିରେ ଭକ୍ତକୁ ରତ୍ନାକର (ସମୁଦ୍ର) ଓ ଜ୍ଞାନକୁ ନଦୀ (ସାଧାରଣ ନଦୀ) ସଙ୍ଗେ ତୁଳନା କରି ଯାଇଛି । ପ୍ରାଚୀ-ସଂସ୍କରଣରେ କିନ୍ତୁ କୁହା ଯାଇଛି—ଭକ୍ତକୁ ଗଙ୍ଗାଧର ବା ଗଙ୍ଗାନଦୀ ରୂପେ ଗ୍ରହଣ କର । ଭକ୍ତ ଯେବେ ଗଙ୍ଗାନଦୀ ହୁଏ, ତେବେ ଜ୍ଞାନ ହେଉଛି ଗୋଟାଏ ସାଧାରଣ ନଦୀ ।

ଭକ୍ତ ଓ ଜ୍ଞାନର ଯେଉଁ ବିରାଟ ପାର୍ଥକ୍ୟ ପ୍ରତିପାଦନ କରିବାକୁ ଭକ୍ତ-ଚରଣ ଚେଷ୍ଟା କରିଛନ୍ତି, ସେ ଦୃଷ୍ଟିରୁ ଦେଖିଲେ 'ଗଙ୍ଗାଧର' ପାଠ ବଦଳରେ 'ରତ୍ନାକର' ପାଠ ଗ୍ରହଣ କରିବା ହିଁ ଯୁକ୍ତିଯୁକ୍ତ ଜଣା-ଯାଉଛି । ଗଙ୍ଗାନଦୀ ଯେତେ ପବିତ୍ର ଓ ଗଭୀର ନଦୀ ହେଲେ ହେଁ, ସେ ତ ଗୋଟାଏ ନଦୀ, ତେଣୁ ଭାରତର ସପ୍ତ ଗଙ୍ଗା ମଧ୍ୟରୁ ଗୋଦାବରୀ ପ୍ରଭୃତି ନଦୀର (ପୁରାଣ ମତରେ ସାତଗୋଟି ଗଙ୍ଗା ମଧ୍ୟରୁ ପ୍ରଥମ ଗଙ୍ଗା ହେଉଛି ଗୋଦାବରୀ—ଆଦ୍ୟା ଗୋଦାବରୀ ଗଙ୍ଗା) ଗଙ୍ଗା ନଦୀ ସହିତ ଅନେକ ପରିମାଣରେ ତୁଳନା କରାଯାଇପାରେ । ମାତ୍ର ରତ୍ନାକର ସଙ୍ଗେ କୌଣସି ନଦୀର ତୁଳନା କଦାପି ସମ୍ଭବ ନୁହେ । ସୁତରାଂ ଭକ୍ତଚରଣଙ୍କ

ଯୁକ୍ତ ଧାରା ଅବଲମ୍ବନ କରି ଉଭୟଙ୍କର ବିଶେଷ ପାର୍ଥକ୍ୟ ନିର୍ଦ୍ଦେଶ କରିବାକୁ ହେଲେ 'ରତ୍ନାକର' ରୂପେ ଭକ୍ତଙ୍କୁ ବର୍ଣ୍ଣନା କରିବା ଏକାନ୍ତ ସମୀଚୀନ ।

ପ୍ରସଙ୍ଗ କ୍ରମେ ଏ ଯେଉଁ ଦୁଇଟି କଥାର ଆଲୋଚନା କରାଗଲା, ଏଥିରୁ ବୁଝିବା ଉଚିତ ନୁହେ ଯେ ଅନ୍ୟାନ୍ୟ ମୁଦ୍ରିତ ପୁସ୍ତକ ତୁଳନାରେ ପ୍ରାଚୀସଂସ୍କରଣ ବିଶେଷ ଉପାଦେୟ ନୁହେ । ସର୍ବଜନପ୍ରିୟ ଓ ବହୁଶ୍ରମରେ ସମ୍ପାଦିତ 'ପ୍ରାଚୀସଂସ୍କରଣ' ତୁଳନାରେ ଠାଏ ଦୁଇଠାରେ ଅନ୍ୟ ପୁସ୍ତକର ପାଠ କିପରି ଅଧିକ ଯୁକ୍ତି ସଙ୍ଗତ ଦେଖାଯାଏ, ତାହାହିଁ ଏ ଆଲୋଚନାର ପ୍ରତିପାଦ୍ୟ ବିଷୟ ।

ମଥୁରାମଙ୍ଗଳର ଟୀକା ଲେଖି ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଭକ୍ତଚରଣଙ୍କ କାବ୍ୟରସ ଜନସାଧାରଣଙ୍କର ଉପଭୋଗ୍ୟ କରାଇବାରେ ଯେଉଁ କୃତିତ୍ୱ ପ୍ରଦର୍ଶନ କରିଛନ୍ତି, ତାହା ସର୍ବଥା ପ୍ରଶଂସନୀୟ । ପୁଣି ଗ୍ରନ୍ଥର ଭୂମିକାରେ ପ୍ରତ୍ୟେକ ଛାନ୍ଦର ଯେଉଁ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା କରାଯାଇଛି, ତାହା ମଧ୍ୟ କବିଙ୍କ ଅନ୍ତର ପରୀକ୍ଷାର ଅଭିନବ ସମ୍ବଳ ।



# କବିଙ୍କ କାଳ ନିରୂପଣ

ଓଡ଼ିଆ କବିଙ୍କ କାଳ ନିରୂପଣ:—

ଉତ୍କଳ ଇତିହାସରେ କବିମାନଙ୍କ କାଳ ନିରୂପଣ ଗୋଟିଏ ବିଶିଷ୍ଟ ସମସ୍ୟା । କଉଣ ଜଣେ କେଉଁ ଅବ୍ଦରେ ଜନ୍ମ ହୋଇ କେତେ ବର୍ଷ ଜୀବିତ ଥିଲେ ଓ କେଉଁ କେଉଁ କାବ୍ୟ ରଚନା କରିଥିଲେ, ତାହାର ଏ ପର୍ଯ୍ୟନ୍ତ ସମାଧାନ କରି ଯାଇ ପାରି ନାହିଁ । ସମସ୍ତ କବି ନ ହେଲେ ମଧ୍ୟ ବହୁ କବିଙ୍କ ସମ୍ପର୍କରେ ଏକଥା କୁହାଯାଇ ପାରିବ । ଗବେଷଣାର ପ୍ରସାର ସଙ୍ଗେ ସଙ୍ଗେ ବହୁ ଦୁରତିକ୍ରମ୍ୟ ସମସ୍ୟା ସମାଧାନ କରିବା ସହଜସାଧ୍ୟ ହୋଇପଡ଼ୁଛି । ଓଡ଼ିଆ ସାହିତ୍ୟର ପୂର୍ଣ୍ଣାଙ୍ଗ ଇତିହାସ ପ୍ରଣୟନ ପାଇଁ ଅଦ୍ୟାବଧି କୌଣସି ଧାରାବାହିକ ଉଦ୍ୟମ ହୋଇନାହିଁ । ଡକ୍ଟର ସାହେବ, ବିଜୟଚନ୍ଦ୍ର ମଜୁମଦାର, ଶ୍ୟାମସୁନ୍ଦର ରାଜଗୁରୁ, ତାରିଣୀଚରଣ ରଥ, ଜଗବନ୍ଧୁ ସିଂହ, ବିନାୟକ ମିଶ୍ର ପ୍ରମୁଖ ଓଡ଼ିଆ ସାହିତ୍ୟର ଆଲୋଚକମାନଙ୍କ ମଧ୍ୟରେ କବିମାନଙ୍କର କାଳ ନିରୂପଣ ଦେଖି କେତେକ ସ୍ଥଳରେ ଘୋର ମତ ପାର୍ଥକ୍ୟ ପରିଲକ୍ଷିତ ହୁଏ । ମଥୁରାମଙ୍ଗଳ—କବିଙ୍କ କାଳ ନିର୍ଦ୍ଧାରଣ ମତ-ବୈଷମ୍ୟର ଗୋଟିଏ ଉଲ୍ଲେଖଯୋଗ୍ୟ ଦୃଷ୍ଟାନ୍ତ । କୌଣସି କୌଣସି ଓଡ଼ିଆ କବିଙ୍କର ନିରୂପିତକାଳ ଆଦୌ ବିଶ୍ୱାସ ଯୋଗ୍ୟ ନୁହେ ।

କାଳ ନିରୂପଣର ଆବଶ୍ୟକତା:—

ଅନେକ ସମୟରେ କେତେକ ଉଚ୍ଚଶିକ୍ଷିତ ମଧ କହୁଥାନ୍ତି ଯେ କବିଙ୍କ କାବ୍ୟ ପାଠ କରି ରସପାନ କରିବାହିଁ ଉଚିତ । ସେ କେଉଁ ସ୍ଥାନରେ କେତେ ବର୍ଷ ତଳେ ଜନ୍ମଗ୍ରହଣ କରିଥିଲେ, ଏ ସବୁ ଜାଣିବାର ଆବଶ୍ୟକତା କଣ ଅଛି ? ଆମ ଦେଶରେ କାବ୍ୟ କବିତାର ଯେମିତି ଆଲୋଚନା ହେଉଥିଲା ସେ ଦୃଷ୍ଟିରୁ ଅବଶ୍ୟ କବିଙ୍କ କାଳ ନିରୂପଣ ନ କଲେ ବିଶେଷ କ୍ଷତି ହେବ ନାହିଁ । କାବ୍ୟର ଆବୃତ୍ତି ଓ ଗୃଢ଼ାର୍ଥପୂର୍ଣ୍ଣ ପଦ୍ୟମାନଙ୍କର ଅର୍ଥବୋଧରେ କାବ୍ୟ ଚର୍ଚ୍ଚା ପର୍ଯ୍ୟବସିତ ଥିଲା । କିନ୍ତୁ ଆଧୁନିକ ଯୁଗରେ କାବ୍ୟ ବିଚାର ଧାରା ଭିନ୍ନ ମାର୍ଗରେ ଗତି କରୁଛି । ଜଣେ ବ୍ୟକ୍ତିର ପ୍ରକୃତ ପରିଚୟ ପାଇବାକୁ ହେଲେ ଯେପରି ତାହାର ଜନ୍ମସ୍ଥାନ, ଜନ୍ମାବ୍ଦ, ପାରିବାରିକ ବିବରଣୀ ଓ କର୍ମ-କ୍ଷେତ୍ର ପ୍ରଭୃତିର ଧାରଣା ଏକାନ୍ତ ଆବଶ୍ୟକ ସେହିପରି କବିଙ୍କ ଜୀବନୀ ବ୍ୟତୀତ ତାଙ୍କ କାବ୍ୟର ମୂଲ୍ୟ ଓ ମହତ୍ତ୍ୱ ବୁଝିବା ଅତ୍ୟନ୍ତ କଷ୍ଟକର । କବି ସାମାଜିକ ପ୍ରାଣୀ ଓ ନିଜର ପରିପାର୍ଶ୍ୱ, ପରଂପରା ତଥା ସମସାମୟିକ ପରିସ୍ଥିତି ଦ୍ୱାରା ବିଶେଷ ପରିମାଣରେ ପ୍ରଭାବିତ ହୁଅନ୍ତି । କେଉଁ ସ୍ଥାନରେ ସେ ଜନ୍ମ ଗ୍ରହଣ କରିଥିଲେ, ତାଙ୍କ ପୂର୍ବରୁ କେଉଁ କେଉଁ ଶ୍ରେଷ୍ଠ ଗ୍ରନ୍ଥ ପ୍ରଣୀତ ଓ ପ୍ରଚରିତ ହୋଇଥିଲା, ସେ କେଉଁ ବଂଶରେ ଜନ୍ମ ହୋଇ କାବ୍ୟ ଚର୍ଚ୍ଚାର କି ସୁବିଧା ବା ବାଧା ପାଇଥିଲେ, କାହାଠାରୁ ଉପଦେଶ, ପରାମର୍ଶ ବା ପ୍ରେରଣା ପାଇ କର୍ମ କ୍ଷେତ୍ରରେ ଅଗ୍ରସର ହୋଇଥିଲେ, ଏସବୁ ନ ଜାଣିଲେ କବିଙ୍କ କାବ୍ୟର ବହୁମୁଖୀ ବିଶ୍ଳେଷଣ କରି ହେବ ନାହିଁ । ପ୍ରାଚୀନ ଓଡ଼ିଆ ସାହିତ୍ୟ ଧର୍ମତତ୍ତ୍ୱମୂଳକ ହୋଇଥିବାରୁ କବିଙ୍କ ପରିପାର୍ଶ୍ୱ ନ ଜାଣିଲେ ଆଲୋଚନାରେ ବିଭ୍ରାଟ ଘଟିବା ସମ୍ଭବ ।

ଭକ୍ତଚରଣଙ୍କ ସମୟ—ଚାରିଗୋଟି ମତ:—

ଭକ୍ତଚରଣଙ୍କ କାଳନିରୂପଣ କରିବା ଆଗରୁ ମନେ ରଖିବା ଉଚିତ ଯେ ଅନେକ ଆଲୋଚକ ଏ ବିଷୟରେ ନିଜ ନିଜର ମତ ପ୍ରକାଶ କରିଚନ୍ତି ।

ତଳେ ଗୃହୀତୋକ୍ତ ମତ ଉଦ୍ଧାର କରାଯାଉଛି । ଏ ଗୁଡ଼ିକର ଯଥାର୍ଥ ଆଲୋଚନାରୁ ସତ୍ୟ ଆବିଷ୍କାର କରିବା ଅପେକ୍ଷାକୃତ ସହଜ ହେବ ।

୧—ତାରିଣୀ ଚରଣଙ୍କ ମତ:—

ଓଡ଼ିଶାରେ ଓଡ଼ିଆ ସାହିତ୍ୟର ଲେଖକ ମାନଙ୍କ ମଧ୍ୟରେ ସ୍ୱର୍ଗତ ତାରିଣୀ ଚରଣ ରଥ ଅମର କୃତ୍ତି ଅର୍ଜନ କରନ୍ତି । ସେ କବି କବିଙ୍କର କୌଣସି ନିର୍ଦ୍ଦିଷ୍ଟ ସମୟ ଉଲ୍ଲେଖ କରି ନାହାନ୍ତି । ହେଲେହେଁ ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ପରେ ଓ ଅଷ୍ଟାଦଶ ଶତାବ୍ଦୀ ଶେଷ ପାଦର କବିଙ୍କ ପୂର୍ବେ ତାଙ୍କୁ ଅବସ୍ଥାପିତ କରିଅଛନ୍ତି । ଅଭିମନ୍ୟୁ ଅଷ୍ଟାଦଶ ଶତାବ୍ଦୀର ମଧ୍ୟ ଭାଗରେ ଜନ୍ମ ହୋଇଥିଲେ । ଅତଏବ ରଥଙ୍କ ମତରେ ଅଷ୍ଟାଦଶ ଶତାବ୍ଦୀର ୨ୟ ଅର୍ଦ୍ଧରେ ଭକ୍ତଚରଣ ଜୀବିତ ଥିଲେ ।

୨—ବିଜୟଚନ୍ଦ୍ର ମଜୁମଦାରଙ୍କ ମତ:—

ବଙ୍ଗୀୟ ଓଡ଼ିଆ-ସାହିତ୍ୟ ସମାଲୋଚକ ବିଜୟଚନ୍ଦ୍ର ମଜୁମଦାରଙ୍କ ମତରେ ଭକ୍ତଚରଣ ଉପରୋକ୍ତ କାଳର ପ୍ରାୟ ଦୁଇଶହ ବର୍ଷ ପୂର୍ବେ ଜୀବିତ ଥିଲେ । ସେ କହନ୍ତି, ରସକଲ୍ଲୋଳ ଲେଖକ ଦୀନକୃଷ୍ଣ ଦାସ ଓ ଭକ୍ତଚରଣ ଏକ କାଳରେ ଜୀବିତ ଥିଲେ । ତାଙ୍କ ଯୁକ୍ତି ଅନୁସାରେ ଆନୁମାନିକ ୧୫୫୦-୧୬୦୦ ମଧ୍ୟରେ ଦୀନକୃଷ୍ଣଙ୍କ ସମୟ ନିର୍ଦ୍ଦେଶ କରାଯାଇପାରେ । ଉପେନ୍ଦ୍ର ଭଞ୍ଜ ଆନୁମାନିକ ଖ୍ରୀ: ୧୬୮୦ରୁ ୧୭୩୦ ମଧ୍ୟରେ ଥିବେ । ତାଙ୍କ ସମୟରୁ କାବ୍ୟରେ ନାନା ପ୍ରକାର ଆଳଙ୍କାରିକ ଆଡ଼ମ୍ବର ଓ ଶବ୍ଦ ପାଣ୍ଡିତ୍ୟ ପ୍ରଦର୍ଶିତ ହେଲା । ଭକ୍ତଚରଣ ଭଞ୍ଜଙ୍କ ପରବର୍ତ୍ତୀ ଯଦି ହୋଇଥାନ୍ତେ, ତାଙ୍କ କାବ୍ୟରେ ଭଞ୍ଜ ସାହିତ୍ୟ ପରି ଶବ୍ଦାଡ଼ମ୍ବର ଥାଆନ୍ତା । ମାତ୍ର ତାହା ନ ଥିବାରୁ କବିଙ୍କୁ ଭଞ୍ଜଙ୍କର ପୂର୍ବବର୍ତ୍ତୀ କାଳରେ ଖ୍ରୀ ୧୬୦୦ ଖ୍ରୀଷ୍ଟାବ୍ଦ ନିକଟରେ ଅବସ୍ଥାପନ କରାଯାଇପାରେ ।

୩—ହଣ୍ଟର ସାହେବଙ୍କ ମତ—

ଓଡ଼ିଶାର ଇତିହାସ ଲେଖକ ହଣ୍ଟରସାହେବ ଇଥିଙ୍କ ପଥପ୍ରଦର୍ଶକ । ୧୮୭୨ ଖ୍ରୀଷ୍ଟାବ୍ଦରେ ତାଙ୍କର ପୁସ୍ତକ ପ୍ରକାଶ ପାଇଥିଲା । ତହିଁରେ ସେହି ସମୟର ପ୍ରାୟ ଦେଢ଼ଶହ ବର୍ଷ ପୂର୍ବେ ସେ ଭକ୍ତଚରଣଙ୍କୁ ଅବସ୍ଥାପିତ କରି-ଅଛନ୍ତି । ଏ ଦୃଷ୍ଟିରୁ ଦେଖିଲେ ଖ୍ରୀ: ୧୭୨୨ରେ କବି ଜୀବିତ ଥିଲେ । ପାଶ୍ଚାତ୍ୟ ଦେବା ଉଚିତ ନୁହେ ଯେ ହଣ୍ଟର ସାହେବ ବହୁ କବିଙ୍କ ଠିକ୍ ସମୟ ଜାଣି ନ ପାରି ମୋଟାମୋଟି ଭାବରେ କାଳ ନିର୍ଦ୍ଦେଶ କରିଛନ୍ତି । ଅନେକ ସ୍ଥଳରେ ସେ ସ୍ଥୂଳ ସଂଖ୍ୟା ( Round Figures )ର ଆଶ୍ରୟ ନେଇଛନ୍ତି । ତେଣୁ ତାଙ୍କର ସମୟରୁ ଟିକିଏ ଆଗରୁ ବା ପଛରୁ ମଧ୍ୟ ଠେଲି ଦିଆଯାଇ ପାରେ ।

୪—ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମତ—

ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ପ୍ରାଚୀ-ପ୍ରକାଶିତ ମଥୁରାମଙ୍ଗଳ ମୁଖବନ୍ଧରେ ଉପରଲିଖିତ ମତ ଗୁଡ଼ିକ ତନ୍ନ ତନ୍ନ କରି ଆଲୋଚନା କରିଛନ୍ତି । ସେ କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କୁ ପ୍ରାୟ ୧୭୦୦ ଖ୍ରୀଷ୍ଟାବ୍ଦରେ ସ୍ଥାପନ କରି ଦୀନକୃଷ୍ଣଙ୍କୁ ତାଙ୍କର ସମସାମୟିକ ରୂପେ ଗ୍ରହଣ କରିଛନ୍ତି । ସେ ଲେଖିଛନ୍ତି—"ଭକ୍ତଚରଣ ଦୀନକୃଷ୍ଣ ଓ ଉପେନ୍ଦ୍ର ଭଞ୍ଜଙ୍କର ୫୦ । ୬୦ ବର୍ଷ ପରବର୍ତ୍ତୀ । X X ତେବେ ଭକ୍ତଚରଣ ୧୭୫୦ ରୁ ୧୭୬୦ ସାଲରେ ଜୀବିତ ଥିବା ସମ୍ଭବ ପର ।"

ଅଧ୍ୟାପକ ଆର୍ତ୍ତବାବୁଙ୍କ ଦୃଷ୍ଟିରେ ଅନ୍ୟାନ୍ୟ ମତ—

ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଏହି ସିଦ୍ଧାନ୍ତରେ ଉପନୀତ ହୋଇ ଅନ୍ୟ ମତ ଗୁଡ଼ିକର ଖଣ୍ଡନରେ ପ୍ରବୃତ୍ତ ହୋଇ ଅଛନ୍ତି । ହଣ୍ଟର ସାହେବଙ୍କ ନିର୍ଦ୍ଦେଶିତ କାଳ ସମ୍ପର୍କରେ ସେ ଲେଖିଛନ୍ତି—

"ହଣ୍ଟର ସାହେବ କହନ୍ତି ଯେ ଭକ୍ତଚରଣ ଦାସ ୧୫୦ ବର୍ଷ ପୂର୍ବେ ଜୀବିତ ଥିଲେ । × × । ହଣ୍ଟର ତାଙ୍କ ଇତିହାସ ୧୮୭୨ ସାଲର ମୁଦ୍ରିତ କରାଇଅଛନ୍ତି । ତାଙ୍କର ଇତିହାସ ଲେଖା ପ୍ରାୟ ସେହିବର୍ଷ ବା ତାର ପୂର୍ବ ବର୍ଷ ହୋଇଥିବା ସମ୍ଭବପର । × × । ତାଙ୍କ ଗଣନା ଅନୁସାରେ ଭକ୍ତଚରଣ ୧୭୨୨ ସାଲରେ ଜୀବିତ ଥିଲେ । × × × ହଣ୍ଟର ସାହେବଙ୍କ ଉକ୍ତି ଅନୁସାରେ ୧୭୨୩ ସାଲରେ ଜୀବିତ ଥିଲେ । ଲକ୍ଷ୍ମୀକାନ୍ତ ବାବୁଙ୍କ ଗଣନା ଅନୁସାରେ ସେ ୧୭୨୯ ସାଲରେ ଜନ୍ମ-ଗ୍ରହଣ କରିଥିଲେ । ତହୁଁ ହଣ୍ଟରଙ୍କ ମତକୁ ତ୍ୟାଗ କରିବାକୁ ବାଧ ହେଲି । କିନ୍ତୁ ହଣ୍ଟର ସାହେବ ସତ୍ୟର ସମୀପବର୍ତ୍ତୀ ।"

ହଣ୍ଟର ସାହେବଙ୍କ ମତକୁ ତ୍ୟାଗ କରି ଆର୍ତ୍ତବାବୁ ନିଜ ମତର ଗୌରବ ଦେଖାଇବା ପାଇଁ ପୁଣି ଲେଖିଛନ୍ତି—"ମୁଁ ଆଭ୍ୟନ୍ତରୀଣ ପ୍ରମାଣ ବଳରେ ଭକ୍ତଚରଣଙ୍କ ସମୟ ଯାହା ନିରୂପଣ କରିଥିଲି, ତାହା ଲକ୍ଷ୍ମୀକାନ୍ତ ବାବୁଙ୍କ ଅନୁସନ୍ଧାନ ଫଳରେ ପ୍ରାପ୍ତ ସମୟ ନିରୂପଣ ସଙ୍ଗେ ସମାନ କହିଲେ ଚଳେ ।" ଆର୍ତ୍ତବାବୁଙ୍କ ନିରୂପିତ ସମୟ ଏହା ଆଗରୁ ଉଲ୍ଲେଖ କରା ଯାଇଛି । ମାତ୍ର ମଥୁରାମଙ୍ଗଳ ମୁଖବନ୍ଧରେ ଯେଉଁ କାରଣରୁ ହଣ୍ଟର ସାହେବ ଓ ତାରିଣୀଚରଣ ରଥଙ୍କ ମତ ସେ ଗ୍ରହଣ କରି ନାହାନ୍ତି, ସେହି କାରଣରୁ ତାଙ୍କ ନିଜ ମତ ମଧ୍ୟ ଗ୍ରହଣ କରାଯାଇ ପାରିବ ନାହିଁ । ଅନ୍ୟଦିଗରୁ ଦେଖିଲେ ଯେଉଁ ହିସାବରେ ଆର୍ତ୍ତବାବୁ ଠିକ୍, ସେ ଦୃଷ୍ଟିରୁ ଅନ୍ୟମାନେ ବି ଠିକ୍ । ଲକ୍ଷ୍ମୀକାନ୍ତ ବାବୁଙ୍କ ଗଣନାକୁ ସେ ସିଦ୍ଧାନ୍ତ ରୂପେ ଗ୍ରହଣ କରି କବିଙ୍କ ଜନ୍ମ ସମୟ ଖ୍ରୀ. ୧୭୨୯ ବୋଲି ସ୍ୱୀକାର କରିଅଛନ୍ତି । ତାହା ମଧ୍ୟ ଯେ ଏକାନ୍ତ ଅଭ୍ରାନ୍ତ, ଏହା ସେ ନିଜେହି କେତେକ କଳ୍ପିତ ପ୍ରମାଣ ବଳରେ ଅନୁମାନ ମାତ୍ର କରିଛନ୍ତି ।

## ହଣ୍ଟର ଓ ଆର୍ତ୍ତବାବୁଙ୍କ ମତରେ ପ୍ରଭେଦ ଅଛି କି ?

ବର୍ତ୍ତମାନ ଧରାଯାଉ, ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀଙ୍କ ମତ

ବିଶ୍ୱାସଯୋଗ୍ୟ । ଆର୍ତ୍ତବାବୁ କହନ୍ତନ୍ତି, ତାଙ୍କ ନିଜ ମତ ଏଥି ସଙ୍ଗେ ପ୍ରାୟ ମିଳିଯାଉଛି । ଲକ୍ଷ୍ମୀକାନ୍ତବାବୁ ଖ୍ରୀ: ୧୭୨୯ ରୁ ଖ୍ରୀ: ୧୮୧୩ ରେ କବିଙ୍କୁ ସ୍ଥାପନ କରି ଥିବାରୁ ଓ ଆର୍ତ୍ତବାବୁ ୧୭୫୦—୧୭୭୦ ରେ କବି ଜୀବିତ ଥିଲେ ବୋଲି କହିଥିବାରୁ, ନିଜ ମତ ମିଳିଯାଉଛି ବୋଲି (ଆର୍ତ୍ତବାବୁ) ଯୁକ୍ତି କରିଛନ୍ତି । ଏ ଯୁକ୍ତିକୁ ଯେବେ ଆହୁରି ଟିକିଏ ପ୍ରସାରିତ ଓ ବିସ୍ତାରିତ କରାଯାଏ, ତେବେ ଦେଖାଯିବ, ଆର୍ତ୍ତବାବୁଙ୍କ ମତ ପରି ହଣ୍ଟର ଓ ରଥବାବୁଙ୍କ ମତ ମଧ୍ୟ ଲକ୍ଷ୍ମୀକାନ୍ତ ବାବୁଙ୍କ ମତ ସଙ୍ଗେ ମିଳି ଯାଉଛି । ହଣ୍ଟର ସାହେବ ସ୍ଥୂଳ ଘଣ୍ଟାରେ କବିମାନଙ୍କ କାଳ ନିର୍ଦ୍ଦେଶ କରିଅଛନ୍ତି । ହଣ୍ଟର ଓ ଲକ୍ଷ୍ମୀକାନ୍ତବାବୁଙ୍କ ମତ ମଧ୍ୟରେ ମାତ୍ର ସାତ ବର୍ଷ ବ୍ୟବଧାନ (୧୭୨୯—୧୭୨୨=୭ ବର୍ଷ) । ଲକ୍ଷ୍ମୀକାନ୍ତ ବାବୁଙ୍କ ସିଦ୍ଧାନ୍ତ ଅପେକ୍ଷାକୃତ ବଳିଷ୍ଠ ପ୍ରମାଣ ଉପରେ ପ୍ରତିଷ୍ଠିତ ହୋଇଥିବାରୁ ଓ ହଣ୍ଟରଙ୍କ କାଳ ସ୍ଥୂଳ ହୋଇଥିବାରୁ ଗୋଟିଏ ମତକୁ ୭ ବର୍ଷ ପଛକୁ କିମ୍ବା ଅନ୍ୟ ମତଟିକୁ ୭ ବର୍ଷ ଆଗକୁ ଠେଲି ଦିଆଯାଇପାରେ । ଏ ଦୃଷ୍ଟିରୁ ଉଭୟ ମତ ପ୍ରାୟ ମିଳିଯାଉଛି ।

ଏଥିସଙ୍ଗେ ପୁଣି ବିଚାର କରିବାର କଥା, ଆର୍ତ୍ତବାବୁ କବିଙ୍କ ଜନ୍ମକାଳ କିମ୍ବା ଦେହତ୍ୟାଗ ସମୟ ଠିକ୍ କରି ପାରି ନାହାନ୍ତି । ସେ କେବଳ କହନ୍ତି, ୧୭୫୦ । ୧୭୭୦ ବେଳକୁ କବି ଜୀବିତ ଥିଲେ । ଗୋଟିଏ ମାତ୍ର ଆମ୍ବ ଥିବା ଗଛକୁ ପଥର ଫିଙ୍ଗିଲେ ସେହି ଆମ୍ବଟିରେ ତାହା ବାଜି ନ ପାରେ । ମାତ୍ର ଶହ ଶହ ଆମ୍ବଥିବା ଗଛକୁ ଆଖି ବୁଜି ପଥର ଫିଙ୍ଗିଲେ ମଧ୍ୟ ଗୋଟାଏ ଖଣ୍ଡେ ଆମ୍ବରେ ବାଜିଯିବ । ଭକ୍ତଚରଣ ଏତେ ବର୍ଷ ବଞ୍ଚିଥିଲେ ଯେ ୮୫ ବର୍ଷ ବ୍ୟାପୀ ଜୀବନର ଯେ କୌଣସି ଗୋଟିଏ ବର୍ଷକୁ ଲକ୍ଷ୍ୟ କଲେ ଗଣନା ଠିକ୍ ବୋଲି ମନେ ହେବ । ଆର୍ତ୍ତବାବୁ କହନ୍ତି ୧୭୫୦ ବେଳକୁ କବି ବଞ୍ଚିଥିଲେ । ହଣ୍ଟର ମଧ୍ୟ କହନ୍ତି ୧୭୨୨ ବେଳକୁ କବି ଜୀବିତ ଥିଲେ । ଏଥିରୁ କ'ଣ ବୁଝାଯାଏ ଯେ ୧୭୫୦ ବେଳକୁ ସେ ମରିଯାଇଥିଲେ ? ସେ ହିସାବରେ ଦେଖିଲେ ତାରିଣୀ ବାବୁଙ୍କ ମତ ଅଗ୍ରାହ୍ୟ ହେବାର କୌଣସି କାରଣ ନାହିଁ । ଆର୍ତ୍ତବାବୁଙ୍କର

ବହୁ ଆଗରୁ ସେ ଲେଖି ଥିବାରୁ ତାଙ୍କୁ ବେଶୀ ଅନ୍ଧାର ମଧ୍ୟରେ ଗଡ଼ି ଚାଲିବାକୁ ପଡ଼ୁଥିଲା । ଅବଶ୍ୟ ତାରଣୀଚରଣ ଅଭିମନ୍ୟୁଙ୍କ ନାମ ପରେ ଭକ୍ତ ଚରଣଙ୍କୁ ରଖି ଠିକ୍ କରି ନାହାନ୍ତି । ତେବେ ଭକ୍ତଚରଣ ଯଦି ଓ ଅଭିମନ୍ୟୁଙ୍କ ଅଳ୍ପ ବର୍ଷ ପୂର୍ବରୁ ଜନ୍ମ ଗ୍ରହଣ କରିଥିଲେ, ତଥାପି ଅଭିମନ୍ୟୁଙ୍କ ପ୍ରସିଦ୍ଧି ଓ ଗୌରବ ତୁଳନାରେ ସେ ନିଶ୍ଚୟ ଊଣା ହେବାରୁ, ତାରିଣୀଙ୍କ ମତରେ ପ୍ରଥମେ ଅଭିମନ୍ୟୁହିଁ ସ୍ଥାନ ପାଇବା କଥା । ଏବେ ସୁଦ୍ଧା, ଦୁଇ ଜଣ ସମସାମୟିକ କବି ବା ଲେଖକଙ୍କର ଆଲୋଚନା ବେଳେ, ଜଣେ ଯେବେ ବୟସରେ ୪।୫ ବର୍ଷ ଶ୍ରେଷ୍ଠ ହୋଇ ମଧ୍ୟ ବେଶୀ ସୁନାମ ଅର୍ଜିଥାଏ, ପ୍ରଥମେ ତାରି ନାମ ଉଲ୍ଲେଖ କରାଯାଇ ଥାଏ ।

ତେଣୁ କବିଙ୍କ "ଜୀବିତ ଥିବା" କାଳ ନିର୍ଦ୍ଦେଶରେ ହରିହର, ତାରିଣୀ ଚରଣ ଓ ଆର୍ତ୍ତବାବୁ ଏକ ଆସନରେ ଆସୀନ ।

## ବିଜୟ ଚନ୍ଦ୍ର ମଜୁମଦାରଙ୍କ ମତପରୀକ୍ଷା:—

ଏଥିପୂର୍ବେ ମଜୁମଦାରଙ୍କ ମତ ଉପସ୍ଥାପନ କରି ଯାଇଛି । ଆର୍ତ୍ତବାବୁ ଯଥାର୍ଥରେ କହିଛନ୍ତି—"ଭକ୍ତଚରଣ ଯେ ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀ, ବୈଦେହୀଶ ବିଳାସ, ସୁଭଦ୍ରା ପରିଣୟ, ପ୍ରେମ ସୁଧାନିଧି, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ପାଠ କରିଥିଲେ, ଜଣା ଯାଉନି ।" ମଥୁରାମଙ୍ଗଳରେ ଭଞ୍ଜ ସାହିତ୍ୟ ସୁଲଭ ଆଳଂକାରିକ ଅପ୍ରାକୃତକତା ନାହିଁ ବୋଲି ବିଜୟଚନ୍ଦ୍ର କହିଛନ୍ତି । ଏହା ଠିକ୍ ନୁହେ । ଚତୁର୍ଥ ଛାନ୍ଦର ସପ୍ତମ ପଦ ଓ ଅଷ୍ଟମ ଛାନ୍ଦର ଦ୍ୱାଦଶ ଓ ଚତୁର୍ଦ୍ଦଶ ପଦମାନ ପାଠ କଲେ ଏହା ପ୍ରତିପନ୍ନ ହେବ । ମଜୁମଦାର ଘୋର ଭ୍ରାନ୍ତିରେ ପଡ଼ି କବିଙ୍କୁ ବହୁ ପୂର୍ବକୁ ଟାଣି ନେଇଛନ୍ତି ।

## ଆର୍ତ୍ତବାବୁଙ୍କ ଗଣନାରେ ଭୁଲ:—

ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀଙ୍କ ଅନୁସନ୍ଧାନ ପରେ ପ୍ରାପ୍ତ ଗଣନାକୁ ଅବଲମ୍ବନ କରି କବି ଖ୍ରୀ: ୧୭୬୯ରେ

ଜନ୍ମ ହୋଇ ଖ୍ରୀ: ୧୮୧୪ ରେ ଦେହ ତ୍ୟାଗ କରିଥିଲେ ବୋଲି ଲେଖିଛନ୍ତି । ତଳେ ତାଙ୍କ ଗଣନା ଉଦ୍ଧାର କରାଗଲା—

ଜବ ଭକ୍ତଚରଣ "ଦେହତ୍ୟାଗ କରିବାର ଆଠଦିନ ପୂର୍ବରୁ × × ଦାମୋଦର ଆଚାର୍ଯ୍ୟ ପ୍ରଭୃତିଙ୍କ ସହିତ ପୁରୀଯାତ୍ରା କରିଥିଲେ । × × ୪୦ ବର୍ଷ ପୂର୍ବେ (୧୯୪୨ ଖ୍ରୀଷ୍ଟାବ୍ଦର ୪୦ ବର୍ଷ ପୂର୍ବେ) ଦାମୋଦର ଆଚାର୍ଯ୍ୟ ୯୦ ବର୍ଷ ବୟସରେ ଦେହତ୍ୟାଗ କରିଥିଲେ । ତାଙ୍କୁ ସେତେବେଳେ ୧୭ ବର୍ଷ ବୟସ ହୋଇଥିଲା, ସେ ଭକ୍ତଚରଣଙ୍କ ସହିତ ପୁରୀ ଧାମକୁ ଯାଇଥିଲେ । ଅର୍ଥାତ୍ ଆଜକୁ (୧୯୪୨ରୁ) ୧୧୪ ବର୍ଷ ପୂର୍ବେ ଭକ୍ତଚରଣ ପ୍ରାୟ ୮୫ ବର୍ଷ ବୟସରେ ଦେହତ୍ୟାଗ କରିଥିଲେ । ଏଥିରୁ ଅନୁମିତ ହୁଏ ଯେ ସେ ପ୍ରାୟ ୧୭୨୯ ସାଲରେ ଜନ୍ମଗ୍ରହଣ କରି ୮୨୩ ଖ୍ରୀଷ୍ଟାବ୍ଦରେ ଦେହ ତ୍ୟାଗ କରିଥିଲେ ।"

ଆର୍ତ୍ତବାବୁଙ୍କ ଏ ହିସାବ ଭୁଲ ହୋଇଯାଇଛି । ୧୯୪୨ରୁ ୧୯୫୨ ହେଲା, କଲେଜରେ ଏ ପୁସ୍ତକର ଆଲୋଚନା ଅନାବରତ ହେଉଛି, ତଥାପି ଅଧ୍ୟାପକଙ୍କଠାରୁ ଛାତ୍ରଙ୍କ ପର୍ଯ୍ୟନ୍ତ ସମସ୍ତେ ଲେଖୁଛନ୍ତି—"ଭକ୍ତଚରଣ ୧୭୨୯ ଖ୍ରୀଷ୍ଟାବ୍ଦରେ ଜନ୍ମ ହୋଇଥିଲେ ।" ଆର୍ତ୍ତବାବୁ ଯାହା ଅକ୍ଷରରେ ଲେଖିଛନ୍ତି, ତାକୁ ଅଙ୍କରେ ଲେଖି ହିସାବ କଲେ ଭୁଲଟା ଜଣାପଡ଼ିବ ।

| | |
|---|---|
| ୧୯୪୨ର ୪୦ ବର୍ଷ ପୂର୍ବ ହେଉଛି— | ୧୯୦୨ |
| ୯୦ ବର୍ଷ ବୟସରେ ସେ ବର୍ଷ ଦାମୋଦରଙ୍କ ମୃତ୍ୟୁ— | ୯୦ |
| ସେତେବେଳେ ତାଙ୍କର ଜନ୍ମ ସମୟ— | ୧୮୧୨ |
| ତାଙ୍କୁ ୧୭ ବର୍ଷ ବେଳେ ଜବଙ୍କ ମୃତ୍ୟୁ— | ୧୭ |

| | |
|---|---|
| ତେଣୁ କବି ଦେହତ୍ୟାଗ କଲେ— | ୧୮୨୮ |
| ସେ ବଞ୍ଚିଥିଲେ ୮୫ ବର୍ଷ— | ୮୫ |
| ତେଣୁ କବିଙ୍କ ଜନ୍ମାବ୍ଦ— | ୧୭୪୩ |

ଭକ୍ତଚରଣ ୧୭୪୩ରେ ଭୂମିଷ୍ଠ ହୋଇ ୧୮୨୮ରେ ଇହଲୀଳା ସାଙ୍ଗ କରିଥିଲେ ।

### ଏ କାଳ ନିରୂପଣର ସାରକଥା—

ଏ ସମ୍ପର୍କରେ କେତୋଟି କଥା ମନେ ରଖିବାକୁ ହେବ । (କ) ଭକ୍ତ-ଚରଣଙ୍କ ଉପରେ ରସକଲ୍ଲୋଳର ସ୍ପଷ୍ଟ ପ୍ରଭାବ ପଡିଥିବାରୁ ସେ ୧୭୦୦ର ଅବଶ୍ୟ ପରବର୍ତ୍ତୀ, (ଖ) ଭଞ୍ଜଯୁଗର ଅଳଙ୍କାରର ଘୂର୍ଣ୍ଣି ଫୁଟାଇ ଥିବାରୁ ସେ ଅଷ୍ଟାଦଶ ଶତାବ୍ଦୀର ବହୁ ପୂର୍ବରୁ ଜାତ ହେବା ଯୁକ୍ତିଯୁକ୍ତ ନୁହେଁ । (ଗ) ଅଧ୍ୟାପକ ଚୌଧୁରୀ କବିଙ୍କ ବାସଭୂମିକୁ ଯାଇଁ ବହୁ ଅନୁସନ୍ଧାନରୁ ଯେଉଁ ପ୍ରମାଣ ପାଇଛନ୍ତି, ତହିଁରୁ କବିଙ୍କ ଉଲ୍ଲିଖିତ ଜନ୍ମକାଳ ଗ୍ରହଣ ନ କରିବାର କୌଣସି କାରଣ ନାହିଁ ।

# ନାମକରଣ

## କବିଙ୍କ ସାଧନାର ସୌଷ୍ଠବ:—

କବି କାବ୍ୟ-ସନ୍ତାନର ଜନ୍ମଦାତା । ସନ୍ତାନର ନାମକରଣ ଜନକର ଅଭିରୁଚି ଦ୍ୱାରା ଯେଉଁପରି ନିୟନ୍ତ୍ରିତ ହୁଏ, ନାମକରଣର ସୌଷ୍ଠବ ଓ ସୌନ୍ଦର୍ଯ୍ୟ ଦ୍ୱାରା ଜନକର ବିଚାରଶୀଳତା ସେହିପରି ପ୍ରକଟିତ ହୁଏ । ଭକ୍ତକବି ଭକ୍ତଚରଣ ମଥୁରାମଙ୍ଗଳରେ ଅଳ୍ପ କଳ୍ପନାବିଳାସିତା ଓ ଭାବ-ଗୌରବ ପ୍ରଦର୍ଶନ କରି ନାହାନ୍ତି । ଛନ୍ଦେ ଛନ୍ଦେ ଫୁଟି ଉଠିଛି ଔଚିତ୍ୟ ଜ୍ଞାନର ମନମୋହିନୀ ଦୀପ୍ତି, ଛନ୍ଦେ ଛନ୍ଦେ ବିଳସିତ ହୋଇଛି ମାଧୁର୍ଯ୍ୟ-ମୟୀ କଳ୍ପନା, ପଦେ ପଦେ ଉଚ୍ଛ୍ୱସି ଉଠିଛି ଚିନ୍ତାର ଚଞ୍ଚଳତା । କାବ୍ୟ ପ୍ରଣୟନ ପରେ କବି ସରସ ଓ ସଙ୍ଗତ ନାମ ନିର୍ବାଚନ କରିବା ପାଇଁ ଅବଶ୍ୟ ଶ୍ରମ ସ୍ୱୀକାର କରିଥିବେ । ମଥୁରାମଙ୍ଗଳ ରଚନା କରିବା ପୂର୍ବରୁ ସେ ଗୋପମଙ୍ଗଳ ନାମକ କାବ୍ୟ ରଚନା କରିଥିବା ଲୋକମୁଖରୁ ଶୁଣାଯାଏ । ଯାହାହେଉ ମଥୁରାପୁରବାସୀମାନଙ୍କର ଅମଙ୍ଗଳ ଦୂରୀକରଣ ଓ ମଙ୍ଗଳ ବିଧାନହିଁ ଏ କାବ୍ୟର ଉପଜୀବ୍ୟ ବିଷୟ । ନାମକରଣର ସୌଷ୍ଠବରୁ କବିଙ୍କ ସାଧନାର ସାର୍ଥକତା କିପରି ଉପଲବ୍ଧ ହୁଏ, ଦେଖିବାର କଥା ।

## ମଥୁରାମଙ୍ଗଳର ପୃଷ୍ଠପଟ:—

କବି ଭାରତ ବିଖ୍ୟାତ ଧର୍ମପ୍ରଚାରକ ମଧ୍ୱାଚାର୍ଯ୍ୟଙ୍କର ମତାବଲମ୍ବୀ ଥିଲେ । ଶ୍ରୀକୃଷ୍ଣଙ୍କର ଲୀଳା କୀର୍ତ୍ତନ ଓ କାୟମନୋବାକ୍ୟରେ ଭଗବତ୍ ଆରାଧନା ଥିଲା ତାଙ୍କ ଜୀବନବ୍ୟାପୀ ପବିତ୍ର ସାଧନାର ଚରମ ଲକ୍ଷ୍ୟସ୍ଥଳ ।

ଭଗବାନ୍ ଶ୍ରୀକୃଷ୍ଣଙ୍କର ଜନଗୋଷ୍ଠି ପୁରାଣ-ପ୍ରସିଦ୍ଧ ଲୀଳାକ୍ଷେତ୍ର ମଧ୍ୟରେ ମଥୁରା ଅନ୍ୟତମ । ଗୋପଲୀଳା ଓ ଦ୍ୱାରକାଲୀଳାର ଅପୂର୍ବ ସମନ୍ୱୟ ମଥୁରାଲୀଳାରେ ଘଟିଥିଲା । ପଦ୍ମପୁରାଣ ପାତାଳଖଣ୍ଡରେ ମୋକ୍ଷଦାୟିନୀ-ପୁରୀ ମାନଙ୍କ ମଧ୍ୟରେ ମଥୁରାର ଭୂୟସୀ ପ୍ରଶଂସା କରାଯାଇଛି । ସପ୍ତପୁରୀ ମଧ୍ୟରେ ମଧୁପୁରୀ ବା ମଥୁରା ସର୍ବଶ୍ରେଷ୍ଠ ରୂପେ ବର୍ଣ୍ଣିତ ହୋଇଅଛି । ଭଗବାନଙ୍କ ଗୋପଲୀଳା ମାଧୁର୍ଯ୍ୟମୟୀ ଓ ଦ୍ୱାରକାଲୀଳା ଐଶ୍ୱର୍ଯ୍ୟମୟୀ । ମଥୁରାଲୀଳାରେ କିନ୍ତୁ ମାଧୁର୍ଯ୍ୟ ଓ ଐଶ୍ୱର୍ଯ୍ୟର ସମନ୍ୱୟ ହେତୁ ଶ୍ରୀକୃଷ୍ଣ-ଲୀଳାର ଚମତ୍କାରିତା ଓ ମାଦକତା ବହୁଗୁଣରେ ବଢ଼ିଯାଇଛି । ଭଗବାନ୍ ଭକ୍ତପ୍ରିୟ ଓ ଧର୍ମ ସଂସ୍ଥାପନ ନିମିତ୍ତ ଯୁଗେ ଯୁଗେ ଅବତାର ଗ୍ରହଣ କରନ୍ତି । ଭଗବଦ୍‌ଗୀତାରେ ଭକ୍ତମାନଙ୍କୁ ଏ ଅଭୟ ବାଣୀ ଭଗବାନ୍ ଶ୍ରୀକୃଷ୍ଣ ଶୁଣାଇ ଦେଇଅଛନ୍ତି । ମଥୁରାମଙ୍ଗଳରେ ତଥା ବୈଷ୍ଣବ ପୁରାଣ-ମାନଙ୍କରେ ଏ ତତ୍ତ୍ୱର ସତ୍ୟତା ପ୍ରତିପାଦନ କରାଯାଇଛି ।

## ମଥୁରାମଙ୍ଗଳ ନାମରୁ ଗୋପ ଅମଙ୍ଗଳ:—

ବିଭିନ୍ନ ସମାଲୋଚକ ମଥୁରାମଙ୍ଗଳ ନାମକରଣର ସାର୍ଥକତା ଭିନ୍ନ ଭିନ୍ନ ଦୃଷ୍ଟିକୋଣରୁ ବିଚାର କରିବାକୁ ପ୍ରୟାସୀ ହୋଇଅଛନ୍ତି । ଭକ୍ତଚରଣ ଯେ ଭକ୍ତପ୍ରବର, ଏକଥା ଅସ୍ୱୀକାର କରାଯାଇ ନ ପାରେ । କବିଙ୍କ ଭକ୍ତି-ନିଷ୍ଠା ଆଲୋଚନା କଲେ ଦେଖାଯିବ, ସେ ଗୋପୀ ଭାବରେ ତନ୍ମୟ ହୋଇପଡ଼ିଛନ୍ତି । ପୁଣି କେତେକ ସ୍ଥଳରେ ନିଜକୁ ଅକ୍ରୂର ରୂପେ ଓ ଅନ୍ୟ କେତେକ ସ୍ଥଳରେ ଉଦ୍ଧବ ରୂପେ କଳନା କରି ଭାବ ବିହ୍ୱଳତାରେ ଅଧୀର ହୋଇଯାଇଛନ୍ତି । ସେ ଦୀନକୃଷ୍ଣଙ୍କ ପରି କେବଳ "ନାମ କୀର୍ତ୍ତନ କରି ସୁଖେ ନର୍ତ୍ତନ କରି ନାହାନ୍ତି ।" ବରଂ କୃଷ୍ଣଚନ୍ଦ୍ରଙ୍କର ଅନୁସରଣ, ଅନୁଚିନ୍ତନ ଓ ଆତ୍ମକ୍ଷମା ଲାଳସାରେ ସେ ଉତ୍କଣ୍ଠିତ । ସେଥିପାଇଁ କରୁଣ ରସର ପ୍ରାଣସ୍ପର୍ଶୀ ମୂର୍ଚ୍ଛନାରେ ସମଗ୍ର କାବ୍ୟ ଉଚ୍ଛଳ ହୋଇ ଉଠିଛି । ବିରହକାତର କାରୁଣ୍ୟ ଲହରୀର ଉଦ୍‌ବେଗ୍ୟ ଚିତ୍ରଣରେ କବିଙ୍କର ଭକ୍ତ

ଓ ଶିଳ୍ପଗୁଣସମ୍ପୂର୍ଣ୍ଣ ଅଡ଼ମ୍ବରପ୍ରକାଶ କରିଅଛି । କେହି କେହି କହନ୍ତି— "ମଥୁରାମଙ୍ଗଳ ନାମ ମଧ୍ୟ ଆପେକ୍ଷିକ, କାରଣ ମଥୁରାର ମଙ୍ଗଳରେ ଗୋପର ଅମଙ୍ଗଳ ଅର୍ଥାତ୍ କୃଷ୍ଣଚନ୍ଦ୍ରଙ୍କର ବିରହ ସୂଚିତ ହୋଇଅଛି ।" କବି ମଥୁରାମଙ୍ଗଳ ଅଷ୍ଟମ ଛାନ୍ଦରେ ଶ୍ରୀକୃଷ୍ଣଙ୍କ ମୁଖରେ ପ୍ରକାଶ କରିଅଛନ୍ତି—

କୃଷ୍ଣ କହନ୍ତି ଶୁଣ ସାରଙ୍ଗନେତ୍ରି
ନ କର କିଛି ଚିନ୍ତା କମଳଗାତ୍ରି

X X X

ପ୍ରବାସୀ ହୋଏ ଯେବେ ପ୍ରାଣ ନାୟକ
ପୁଣି ଆସିଲେ ସୁଖ ହୋଏ ଅନେକ ।

ଗୋପୀଙ୍କ ବିରହ ବର୍ଣ୍ଣନା ଫଳରେ ଭକ୍ତ କବି ଗୋପୀ ଭାବରେ ତନ୍ମୟ ହେବାର ସୁଯୋଗ ପାଇଛନ୍ତି । ପୁଣି ଶ୍ରୀକୃଷ୍ଣଙ୍କର ବିରହ ଦଶା ବର୍ଣ୍ଣନାରେ କବିଙ୍କ ସମପ୍ରାଣତାହିଁ ପ୍ରକାଶିତ ହୋଇଅଛି । କଂସ ବଧ ପରେ ଗୋପାଙ୍ଗନାମାନଙ୍କର ମଧୁର ସ୍ମୃତି ଶ୍ରୀକୃଷ୍ଣଙ୍କୁ ଆନ୍ଦୋଳିତ କରୁଛି । କବିଙ୍କ ଭାଷାରେ—

ଏଥୁ ଅନନ୍ତରେ କେତେକ କାଳ ଗଲା ବହି
ପଡ଼ିଲେ ଗୋବିନ୍ଦ ମନେ ଗୋପପୁର ଗୋଈ
ଘୋଟିଲା ମଦନ କରି ବଶିଲା ଅଧିକାର
ବେତ୍ର ବେଳ କାୟାକୁ ବାନ୍ଧିଲା ରତିବର ।

ଶ୍ରୀକୃଷ୍ଣ ଗୋପୀମାନଙ୍କୁ ନିରନ୍ତର ଚିନ୍ତା କରି ସେମାନଙ୍କ ସଙ୍ଗେ ବିବିଧ ଲୀଳାର ସ୍ୱପ୍ନ ଦେଖିଛନ୍ତି—

ଏହା (ସ୍ୱପ୍ନ) ଦେଖି ଘନଶ୍ୟାମ ଚମକି ପଡ଼ିଲେ
ଭେଦିଲା ମଦନ ଶର ଅରତ ହୋଇଲେ । (୨୪ଶ ଛାନ୍ଦ)

କବିଙ୍କର ସମପ୍ରାଣତା ଓ ଗଭୀର ଭକ୍ତିଭକ୍ତ ଶ୍ରୀକୃଷ୍ଣଙ୍କ ତଥା ଗୋପୀମାନଙ୍କର ଏକାନ୍ତ ଶୋକ ଚିତ୍ରଣ ପରେ ଫୁଟିପଡ଼ୁଛି । ସେ କେବଳ ଗୋପୀମାନଙ୍କର ଲୋତକ ପାତ କରାଇ ନାହାନ୍ତି—ନିଜେ ମଧ ଲୁହ ଗଡ଼ାଇ ଦେଇଛନ୍ତି—

"ବୋଇଲେ ଭକ୍ତଦାସ ନେତ୍ର ଜଳ ଯାଏ ବହି ।" ଅନୁରାଗୀ ହୃଦୟରେ କବିଙ୍କର ଏହି ଛାନ୍ଦ ଗୁଡ଼ିକ ପାଠ କଲେ ମନରେ ଗଭୀର ସମବେଦନାର ଛାୟା ଖେଳିଯାଏ ।

ଏ ଦୃଷ୍ଟିରୁ ବିଚାର କଲେ ମଥୁରାରେ କଂସ ବଧ ଘଟିଥିବାରୁ ତ ମଥୁରାମଙ୍ଗଳ ନାମର ସାର୍ଥକତା ପ୍ରକାଶ ପାଏ—ମାତ୍ର ତହିଁ ସଙ୍ଗେ ସଙ୍ଗେ ଭକ୍ତମାନଙ୍କର ଏକାନ୍ତ କାମ୍ୟ, ଗୋପୀ-ବିରହ-ଜନିତ ଘୋର ବିଷାଦର ଚିତ୍ର ଓ ବର୍ଣ୍ଣନା ଏ ନାମକରଣରୁ ସ୍ୱତଃ ଫୁଟିପଡ଼େ । ମଥୁରାମଙ୍ଗଳର ଚତୁର୍ଥ, ପଞ୍ଚମ, ଷଷ୍ଠ, ସପ୍ତମ, ଅଷ୍ଟମ, ନବମ ଓ ଶେଷ ୭ଟି ଛାନ୍ଦ ଗୋପପୁରବାସୀଙ୍କ 'ଅମଙ୍ଗଳ' ବା ଦୁଃଖ ବର୍ଣ୍ଣନାରେ ପର୍ଯ୍ୟବସିତ । ସୁତରାଂ 'ମଥୁରାମଙ୍ଗଳ'ର "ଆପେକ୍ଷିକତା"ର ଅନୁମାନ ଆଦୌ ଅମୂଳକ ନୁହେ ।

## 'ମଥୁରାମଙ୍ଗଳ'ରୁ ମଥୁରା ମଙ୍ଗଳର ସୂଚନା—

ପୁରାଣକାରଙ୍କ ଭାଷାରେ 'ଧନ୍ୟା ମଧୁପୁରୀ'ର ମୁକ୍ତି ବିଧାନ ମଥୁରାମଙ୍ଗଳରେ ବର୍ଣ୍ଣିତ ହୋଇଥିବାରୁ ଏହାର ଯଥାର୍ଥ ନାମକରଣ ହୋଇଅଛି । କଂସର ଅତ୍ୟାଚାରର ବର୍ଣ୍ଣନା କରି କବି ଲେଖିଛନ୍ତି—

ମହା ପ୍ରତାପୀ ଦୁର୍ମିଳା ନନ୍ଦନ
ଇନ୍ଦୁମତୀ ଗର୍ଭେ ହେଲା ଜନମ ॥
ବାହୁବଳେ ପୃଥ୍ୱୀ ଆକ୍ରୋଶିଲା
ନୃପବର ମାନଙ୍କୁ ବନ୍ଦୀ କଲା ॥
ଗୋରୁ ବ୍ରାହ୍ମଣଙ୍କୁ ଦେଲା କଷଣ
ଡରେ ଦେବତା ପଶିଲେ ଶରଣ ॥

ଧର୍ମ ନାଶି ଅଧର୍ମ କର୍ମ କଲେ
ବହୁ ବହୁ ଜୀବଙ୍କୁ ଦୁଃଖ ଦେଲେ ॥

ଭଗବାନ୍ ଯୁଗେ ଯୁଗେ ଅବତାର ଗ୍ରହଣ କରି ଦୁଷ୍କୃତମାନଙ୍କ କବଳରୁ ଜନସାଧାରଣଙ୍କୁ ରକ୍ଷା କରିଅଛନ୍ତି । ଭାଗବତ ପ୍ରଭୃତି ପୁରାଣ ଗ୍ରନ୍ଥମାନଙ୍କରେ ଭଗବାନଙ୍କର ଏ ପ୍ରକାର ଭକ୍ତବାତ୍ସଲ୍ୟ ଅଦ୍ଭୁତ ଭାବରେ ବର୍ଣ୍ଣିତ ହୋଇଅଛି । ସମସ୍ତ ଭକ୍ତ ଏକ ମାର୍ଗରେ ପଥିକ ହୋଇ ଭଗବତ୍ କରୁଣା ଲାଭ କରି ପାରି ନାହାନ୍ତି । ଭାଗବତରେ ଅଛି:—

କାମାତ୍ ଗୋପ୍ୟୋ ଭୟାତ୍ କଂସୋ
ଦ୍ୱେଷାତ୍ ଚୈଦ୍ୟାଦୟୋ ନୃପାଃ
ସମ୍ବନ୍ଧାତ୍ ବୃଷ୍ଣୟଃ ସ୍ନେହାତ୍
ଯୂୟଂ ଭକ୍ତ୍ୟା ବୟଂ ବିଭୋ ।

ଅର୍ଥାତ୍ କାମ-ସମ୍ବନ୍ଧରୁ ଗୋପୀମାନେ, ଭୟରୁ କଂସ, ଦ୍ୱେଷରୁ ଶିଶୁ-ପାଳ ପ୍ରଭୃତି ରଜାମାନେ, ସମ୍ବନ୍ଧରୁ ଅକ୍ରୁର ଓ ଉଦ୍ଧବ ପ୍ରଭୃତି, ସ୍ନେହ ହେତୁରୁ ପାଣ୍ଡବମାନେ ଓ ଭକ୍ତି ହେତୁରୁ ନାରଦ ପ୍ରଭୃତି ମୁନିମାନେ ଭଗବାନଙ୍କୁ ପାଇଥିଲେ । ଏଥିଦ୍ୱାରା ଭଗବାନଙ୍କ ଅସୀମ ଉଦାରତା ଓ ଅଚିନ୍ତନୀୟ କୃପା ପ୍ରକାଶ ପାଉଛି । କଂସର ଶ୍ରୀକୃଷ୍ଣ ମାରଣ ପାଇଁ ଯେ ବିପୁଳ ଆୟୋଜନ, ତାହା ମୁହୂର୍ତ୍ତିକରେ ଭସ୍ମୀଭୂତ ହୋଇଯାଉଛି । ମତ୍ତଦନ୍ତାବଳ ଓ ମହାବଳୀ ମଲ୍ଲ ସମୂହ, ଭଗବାନଙ୍କର ସାବଲୀଳ ଶକ୍ତି-ବିଳାସରେ ଅକାଳରେ ମୃତ୍ୟୁ ମୁଖରେ ପତିତ ହୋଇଅଛନ୍ତି ।କଂସ-ପ୍ରପୀଡ଼ିତ ଗନ୍ଧର୍ବ, କିନ୍ନର ପ୍ରଭୃତି ଆନନ୍ଦରେ ଉନ୍ମତ୍ତ ହୋଇ ଉଠିଛନ୍ତି । କବିଙ୍କ ଭାଷାରେ:—

ଗନ୍ଧର୍ବେ ଗାଇଲେ, ନାଚିଲେ କିନ୍ନର
ବୈଶ୍ୱାନର ଶିଖାମାନ ପ୍ରକାଶିଲେ ସଧୀରେ ବହିଲେ ସମୀର ॥
ବିଦ୍ୟାଧର କୁଳ ହରଷ ହୋଇଲେ ସ୍ତୁତି କରଇ ବେଦାବର
ବସୁମତୀ-ମନ ଯାହା ହେଉଅଛି ତାହା ଜାଣନ୍ତି ଗଦାଧର

ବରୁଣ କୁବେର ଅରୁଣ ଶଶାଙ୍କ
ଅତି ଆନନ୍ଦରେ ନିମଗ୍ନ ହୋଇଲେ ଶଙ୍କା ଛାଡ଼ି ହେଲେ ନିଃଶଙ୍କ ।

## ତେବେ ଶେଷ ସପ୍ତ ଛାନ୍ଦ କାହିଁକି ?—

ଏ ଆନନ୍ଦ ପ୍ରକାଶରେ କଂସର ଅତ୍ୟାଚାର ଶେଷ ହେବା ସଙ୍ଗେ 'ମଥୁରାମଙ୍ଗଳ' କାବ୍ୟର ବସ୍ତୁଗତ ଦିଗ ଶେଷ ହେବା ସଂଗତ ପ୍ରତୀତ ହେଉଅଛି । କାବ୍ୟର ୨୩ଶ ଛାନ୍ଦ ମଧ୍ୟରେ କଂସ ବଧ ଓ ମଥୁରା ଶାନ୍ତି ବିଧାନ କରାଯାଇ ଥିବାରୁ, ନାମର ସାର୍ଥକତା ଏହି ସ୍ଥଳରେ ବିଶ୍ଳେଷଣ କଲେ, ଶେଷ ସାତ ଛାନ୍ଦର ସମାବେଶ ଆଦୌ ଆବଶ୍ୟକ ପରି ମନେ ହୁଏ ନାହିଁ । ତେବେ କି ଲକ୍ଷ୍ୟରେ କବି ଶେଷ ସାତ ଛାନ୍ଦର ସଂଯୋଗ କରି କାବ୍ୟର କଳେବର ବୃଦ୍ଧି କରିଅଛନ୍ତି ? କାବ୍ୟର ଅନ୍ତିମ ଛାନ୍ଦ ପରୀକ୍ଷା କଲେ କବିଙ୍କ ସୌନ୍ଦର୍ଯ୍ୟ-ଜ୍ଞାନ ଓ କଳା-କୌଶଳର ପ୍ରମାଣ ସହିତ ଏ ପ୍ରଶ୍ନର ଉତ୍ତର ମିଳିବ । ଶ୍ରୀକୃଷ୍ଣଙ୍କର ଗୋପପୁରରୁ ମଥୁରା ଯାତ୍ରା ସଂବାଦରେ ଭଗବତ୍‌ପ୍ରାଣ ଗୋପବାଳାମାନେ ମ୍ରିୟମାଣ ହୋଇ ପଡ଼ିଲେ । ସେମାନେ ନାନା ଉପାୟରେ ଶ୍ରୀକୃଷ୍ଣଙ୍କୁ ମଥୁରା ପ୍ରୟାଣରୁ ନିବୃତ୍ତ ହେବା ପାଇଁ ପ୍ରାର୍ଥନା, ଅନୁନୟ ଓ ବିନୟ ପ୍ରକାଶ କରିଥିଲେ । ଲୀଳାମୟ ଭଗବାନ୍ ବିଶ୍ୱମଙ୍ଗଳ ବିଧାନରେ ନିଜର କର୍ତ୍ତବ୍ୟ ବିବେଚନା କରି ସେମାନଙ୍କୁ ନାନା ବିଧ ସାନ୍ତ୍ୱନା ଓ ଉପଦେଶ ଦେଇଥିଲେ । ସେ କହିଥିଲେ—

ବସ୍ତୁକୁ କି ଗଲେ ଆସିବ ନାହିଁ
ପଦ୍ମ ବିହୁନେ ଭୃଙ୍ଗ ରହିବ କାହିଁ ।

× × ×

ଯହିଁ ଥିଲେ ତୁମ୍ଭର କପଟେ ଅଛି
ଗୁରୁ ଧନକୁ କଷ୍ଟ କରି ଯାଉଛି
ଗୋପୀମାନେ ଉତ୍ତରରେ କହିଥିଲେ:—

ଚଳେ ଅନ୍ତର ହେଲେ ଯେମନ୍ତ ହେବ
ଘର ଭୁଚଇ ନାହିଁ ଅନାଇଁ ଥାଉ
ଏବେ ସେ ଗୃହ ଜନ ଅନ୍ତର ହେଲେ
ପରାଣ କ କ ପିଣ୍ଡେ ରହିବ ଭଲେ ।

କେବଳ ସେତକ ନୁହେ, ଶ୍ରୀକୃଷ୍ଣଙ୍କ ପ୍ରସ୍ଥାନରେ ଗୋପପୁରର କରୁଣ ଦୃଶ୍ୟ ସମଗ୍ର ନବମ ଛାନ୍ଦରେ ଯେପରି ଭାବରେ ଚର୍ଚ୍ଚିତ, ପାଠ କଲେ ଭୁକ୍ତ ହୃଦୟରେ ମଧ୍ୟ ଭକ୍ତି ଓ ପ୍ରେମର ସଂଗୃର ହେବ । ଗୋପୀବିଳାପନ କବି ଛାନ୍ଦ ଶେଷରେ କହି ଅଛନ୍ତି:—

କହଇ ଭଗତ ଚରଣ ଦାସ  ଗୋବିନ୍ଦ ବିନ୍ଦୁ ଗୋପୀଏ ନିରାଶ
ସଦନେ ପ୍ରବେଶ ହୋଇଲେ ଯାଇ,  ରଙ୍ଗିମାଚରଣ ଯୁଗଳ ଧ୍ୟାୟି
ନିଶି ଦିବସରେ, ଦୁଃଖେ ରହିଲେ ଅସିବା ଆଶାରେ ।

ଅଷ୍ଟମ ଛାନ୍ଦର 'ଗୃହଜନ ପରେ ଫେରି ଅସିବି' ଏହି ସାନ୍ତ୍ୱନା-ବାଣୀ ଓ ନବମ ଛାନ୍ଦରେ ଦୁଃଖ ଜର୍ଜ୍ଜରିତ ହୃଦୟରେ ଗୋପୀମାନଙ୍କର 'ଆସିବା ଆଶାରେ' ଅପେକ୍ଷା, ଏ ଦୁଇଟିର ବ୍ୟଞ୍ଜନା ବିସ୍ମୃତ ହେଲେ କବିଙ୍କ କାବ୍ୟ-କୌଶଳର ଗୁରୁତ୍ୱ ଉପଲବ୍ଧି କରି ହେବ ନାହିଁ । ପୁଣି ମନସ୍ତତ୍ତ୍ୱର କଷ୍ଟିରେ ସତ୍ୟତା ବିଚାର କଲେ, କିଏ କହିବ, ଶ୍ରୀକୃଷ୍ଣ-ପ୍ରାଣ ଗୋପୀମାନଙ୍କର ଅହରହ କୃଷ୍ଣ ଚିନ୍ତନ ସତ୍ତ୍ୱେ ତାଙ୍କ ମନରେ ସେହି ଚିନ୍ତାର କୌଣସି ପ୍ରତିକ୍ରିୟା ଘଟି ନ ଥିଲା । କଂସବଧ ପୂର୍ବରୁ ଏ ଯେଉଁ ସୂକ୍ଷ୍ମ ମନସ୍ତାତ୍ତ୍ୱିକ ଇଙ୍ଗିତ ଦିଆଯାଇଛି, ଶେଷ ଛାନ୍ଦ ଗୁଡ଼ିକର ସମାବେଶ ହୋଇ ନ ଥିଲେ ଏହାର କୌଣସି ମୂଲ୍ୟ ବା ମହତ୍ତ୍ୱ ପ୍ରତିପାଦିତ ହୋଇ ପାରି ନ ଥାନ୍ତା । ସେଥିପାଇଁ ପ୍ରଥମତଃ 'ଗୃହଜନ ପରେ ଫେରି ଅସିବି'ର ଆଂଶିକ ସତ୍ୟତା ପାଇଁ ଓ ଦ୍ୱିତୀୟରେ ମନସ୍ତତ୍ତ୍ୱର ଗଭୀର ବାସ୍ତବତା ପ୍ରତିପାଦନ କରିବାକୁ ଯାଇ କବି ୨୪ ଶ ଛାନ୍ଦର ଆରମ୍ଭରେ ଲେଖିଛନ୍ତି:—

ବିଚାରନ୍ତି କେମନ୍ତ ପାଇବି ବଂଶୀ
ପେଷିବି ଉଦ୍ଧବ କାଲି ଯିବ ଗୋପପୁରୀ

× × ×

କହୁ ଆସିଥିଲ ଗୃହଦ୍ୱାରେ ବାହୁଡ଼ିବ
ଏବେ ତ ନଗଲ କେତେ ବର୍ଷେ ବାହୁଡ଼ିବ ॥

ଏହା ପରେ ଉଦ୍ଧବ ଶ୍ରୀକୃଷ୍ଣଙ୍କର ବାର୍ତ୍ତା ଘେନି ଗୋପପୁର ପ୍ରୟାଣ କରି ଅଛନ୍ତି ଓ ପୁଣି ଶ୍ରୀକୃଷ୍ଣଙ୍କ ନିକଟକୁ ପ୍ରତ୍ୟାବର୍ତ୍ତନ କରି ଗୋପପୁରର କରୁଣ ଦୃଶ୍ୟ ବର୍ଣ୍ଣନା କରିଛନ୍ତି ।

ମଥୁରାମଙ୍ଗଳରେ ଶେଷ ସାତ ଛାନ୍ଦ ସମାବେଶ କରି କବି ନିଜର ଏ ଦୁଇଟି ଲକ୍ଷ୍ୟ ମାତ୍ର ଚରିତାର୍ଥ କରି ନାହାନ୍ତି; ସେ ନିଜର ଧର୍ମମତର ବ୍ୟାଖ୍ୟାନ କରି ଭକ୍ତିମାର୍ଗର ଗୌରବ ପ୍ରଖ୍ୟାପନ କରିବାର ବିରାଟ ସୁଯୋଗ ପାଇଛନ୍ତି । କବି ଅଭିମନ୍ୟୁ ସାମନ୍ତ ସିଂହାରଙ୍କର ସମସାମୟିକ । ଅଭିମନ୍ୟୁଙ୍କ ଗୁରୁ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଭକ୍ତଚରଣଙ୍କ ଜନ୍ମଭୂମି ଓ ବାସଭୂମିର ନିକଟବର୍ତ୍ତୀ । ସେ ନିଜେ ଗୌଡ଼ୀୟ ବୈଷ୍ଣବ ଥିଲେ ଏବଂ ତାଙ୍କ ଦୀକ୍ଷାର ପ୍ରଭାବରେ ଅଭିମନ୍ୟୁ ସାମନ୍ତ ସିଂହାର ବିଦଗ୍ଧ ଚିନ୍ତାମଣିରେ ଗୌଡ଼ୀୟ ମତବାଦର ବିମଳ ବିଶ୍ଳେଷଣ କରିଯାଇଛନ୍ତି । ଉତ୍କଳୀୟ ବୈଷ୍ଣବମାନଙ୍କର ପ୍ରାୟ କୌଣସି ତାଙ୍କ ଉତ୍କର୍ଷ ସେ ପ୍ରତିପାଦନ କରି ନାହାନ୍ତି । ଭକ୍ତଚରଣ ମଧ୍ୟ ସଦାନନ୍ଦଙ୍କ କାବ୍ୟ କବିତା ଓ ମତବାଦ ଦ୍ୱାରା ପ୍ରଭାବିତ ହୋଇ ଥାଇ ପାରନ୍ତି । ଯେଉଁ ଗୋପୀମାନଙ୍କୁ ସେ ଶ୍ରେଷ୍ଠ ଭକ୍ତ ମନେ କରି ନିଜକୁ ମଧ୍ୟ ତନ୍ମୟ କରି ଦେଇଛନ୍ତି, ସେମାନଙ୍କ ଉପାସନା ମାର୍ଗର ମହତ୍ତ୍ୱ ପ୍ରକଟନ କରିବାର ସୁଯୋଗ କବି କଂସବଧ ପୂର୍ବରୁ ପାଇ ନାହାନ୍ତି । ଭକ୍ତିର ସର୍ବବ୍ୟାପିକା ଶକ୍ତି, ଉଦ୍ଧବଙ୍କ ମତ ପରିବର୍ତ୍ତନ ଓ ଗୋପୀ-ପ୍ରଶଂସାରେ ସେ ପ୍ରମାଣ କରିଦେଇଛନ୍ତି ।

ତେଣୁ ନାମକରଣରେ ବିବିଧ ଲକ୍ଷ୍ୟ ସାଧନ :—

ସମସ୍ତ ଦିଗରୁ ବିଚାର କଲେ ମଥୁରାମଙ୍ଗଳ ନାମରେ ଔଚିତ୍ୟଜ୍ଞାନ ଓ ଭାବବ୍ୟଞ୍ଜନା ପୂରି ରହିଥିବା ସ୍ପଷ୍ଟ ଅନୁଭୂତ ହୁଏ । ମଥୁରାମଙ୍ଗଳରୁ ଗୋପର ଅମଙ୍ଗଳର ସୂଚନା ଦେଇ କବି ଗୋପୀମାନଙ୍କର ଓ କାତର

ଭକ୍ତ-ପରିସ୍ଫୁଟ ଅନ୍ତରର ପରିଚୟ ଦେଇଛନ୍ତି । ଗୋପର ବିରହ-ଜନିତ ଅମଙ୍ଗଳ ଫଳରେ ଅଷ୍ଟମ ଛନ୍ଦରେ ସାନ୍ତ୍ୱନା ଦେଇ, କଂସ ବଧ ପରେ ମଧ୍ୟ, ୭ଟି ମନୋହର ଓ ରସାଳ ଛନ୍ଦ ସମାବେଶ କରିଅଛନ୍ତି । ତାହା ଦ୍ୱାରା କବିଙ୍କ ମନସ୍ତତ୍ତ୍ୱ ଜ୍ଞାନ, ଧର୍ମମତ ଓ ଭକ୍ତିର ଗୌରବ ପ୍ରକୃଷ୍ଟ ରୂପାୟିତ ହୋଇପାରିଛି । ଶେଷରେ କଂସର ବଧ ସାଧନ କରି ଅବତାର ଗ୍ରହଣର ଆବଶ୍ୟକତା ଓ ଭକ୍ତାନୁକମ୍ପାର ସ୍ୱରୂପ ସୂଚାଇ ଦେଇଛନ୍ତି । ଶାସ୍ତ୍ରର 'ଭକ୍ତପ୍ରିୟୋ ମାଧବଃ'-ଏ ଉକ୍ତି ମଥୁରାମଙ୍ଗଳରେ ଜୀବନ୍ତ ହୋଇ ଉଠିଛି ।



# ଭକ୍ତି-ପ୍ରାଣ ଭକ୍ତଚରଣ

କାବ୍ୟରେ କବିପ୍ରାଣ:—

ଭକ୍ତକବି ଭକ୍ତଚରଣଙ୍କର ମଥୁରାମଙ୍ଗଳ ପ୍ରାକୃଷ୍ଣଭ ଉତ୍କଳର ଲକ୍ଷ ଲକ୍ଷ ପାଠକଙ୍କର ପରମ ଆଦରଣୀୟ ଭକ୍ତିରସାତ୍ମକ କାବ୍ୟ । କୃଷ୍ଣଚରିତ-ମୂଳକ ତଥା ରାଧାକୃଷ୍ଣ ବିଷୟକ କାବ୍ୟ ମଧ୍ୟରେ ଯେଉଁ କେତେଗୋଟି କାବ୍ୟର ଦୀପ୍ତି ବହୁ ବର୍ଷବ୍ୟାପୀ ଘାତ ପ୍ରତିଘାତ ମଧ୍ୟରେ ଅମ୍ଳାନ ରହିଅଛି ସେ ମଧ୍ୟରେ ମଥୁରାମଙ୍ଗଳ ଅନ୍ୟତମ । ମଧ୍ୟଯୁଗର କାବ୍ୟ ଗୁଡ଼ିକ ସାଧାରଣତଃ ବସ୍ତୁ କେନ୍ଦ୍ରିକ (Objective) ଓ ପୁରାଣ ଉପରେ ପ୍ରତିଷ୍ଠିତ ହୋଇଥିଲେ ହେଁ ପ୍ରସଙ୍ଗ କ୍ରମେ କବିଙ୍କ ଜୀବନୀ ଓ ଜୀବନଦର୍ଶନ ମଧ୍ୟ ତହିଁରେ କମ୍ ପରିମାଣରେ ପ୍ରତିଫଳିତ ହୋଇନାହିଁ । ଭକ୍ତଚରଣଙ୍କର ଜୀବନୀ ଏ ପର୍ଯ୍ୟନ୍ତ ଘୋର ତମସାଚ୍ଛନ୍ନ; ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀଙ୍କ ପରି ଗବେଷକଙ୍କ ଦ୍ୱାରା ସଂଗୃହୀତ ହୋଇଥିବା ତଥ୍ୟ ମଧ୍ୟ ଅସମ୍ପୂର୍ଣ୍ଣ । ତଥାପି ଜନଶ୍ରୁତିରେ ଓ ଲୋକ ମୁଖରେ କବିଙ୍କର ଜୀବନର ବିଭିନ୍ନ ବିବରଣୀ ଯେଉଁ ପରି ଭାବରେ ବର୍ଣ୍ଣିତ, ତାହା ମଥୁରାମଙ୍ଗଳରୁ ସଂଗ୍ରାହ୍ୟ ତଥ୍ୟଠାରୁ ଭିନ୍ନ ନୁହେଁ । କବି କାବ୍ୟ ରଚନାର ଉଦ୍ଦେଶ୍ୟ ନିର୍ଦ୍ଦେଶ କରିବା ସଙ୍ଗେ ସଙ୍ଗେ ନିଜର ଦିବ୍ୟ ଦୃଷ୍ଟିରେ ଜୀବନର ଲକ୍ଷ୍ୟ ମଧ୍ୟ ସ୍ପଷ୍ଟ ଉଲ୍ଲେଖ କରିଅଛନ୍ତି । ସେହି ନିର୍ଦ୍ଦେଶ ଓ ଉଲ୍ଲେଖ ମଧ୍ୟରେ କବିଙ୍କ ଅନ୍ତରର ଉଚ୍ଛ୍ୱାସ ଅବଧାରଣ କରି ତାଙ୍କ ବ୍ୟକ୍ତିତ୍ୱ ଓ ଗଭୀର ଭକ୍ତିମତ୍ତାର ସ୍ୱରୂପ ନିରୂପଣ କରିବାକୁ ହେବ ।

ଭକ୍ତି-ଭିତ୍ତିରେ କାବ୍ୟ ରଚନା:—

ଭାତ ହାଣ୍ଡିରୁ ଗୋଟିଏ ଚିପିଲା ପରି କବିଙ୍କର ହୁଏତ ଗୋଟିଏ ପଦ ଆଲୋଚନା କଲେ ଅନେକାଂଶରେ ତାଙ୍କର ଅନ୍ତରର ପରିଚୟ ମିଳିବ । କାବ୍ୟର ମୂଳରେ ସେ ଲେଖିଛନ୍ତି—

ଆଉ ସମ୍ପଦେ ନାହିଁ ପ୍ରୟୋଜନ
ଭକ୍ତି ଧନେ ମୋ ଦରିଦ୍ର ଜୀବନ ।

× × ×

ଚଳ ନୃପତି ଯାଚନାରେ ପଡ଼
ଦନ୍ତୁ ଦନ ଅସ୍ତୁତ ଗଳ୍ପ ଛାଡ଼ ।
କୃଷ୍ଣ ଚରିତ ଅମୃତ ବାରିଧି
ଭଳି କହୁଣ ବେଗକୁ ଊଠଧି ।
ତହିଁ କିଛି ମୁଁ ପ୍ରସଙ୍ଗେ କହିବି
ଦୁଃଖି ପାଠକ ଭାବକୁ ଦହିବି ।

ଏଥିରେ କବିଙ୍କର ଭକ୍ତିମୟ ଜୀବନ ଯାପନ ଲାଗି ବଳବତୀ ପିପାସା ଯେଉଁପରି ଅଭିବ୍ୟକ୍ତ ଅସାର ସଂସାରରେ କୃଷ୍ଣସେବାମୂଳକ ଜୀବନ ଯାପନର ଆଦର୍ଶ ସେହିପରି ପରିସ୍ଫୁଟ । ଭକ୍ତକବି ଘନକୃଷ୍ଣ ଦାସ ଆର୍ତ୍ତି-କଣ୍ଠରେ ଓ 'କରମହୀନ ଜନ' ଭଜନରେ 'ଆର୍ତ୍ତିନାଶ ଚଉତିଶା'ରେ ସ୍ତୁତି କରିଅଛନ୍ତି । ପୁଣି ରସକଲ୍ଲୋଳରେ ରସିକ ପାଠକ ମାନଙ୍କୁ ଭକ୍ତିର ମାହାତ୍ମ୍ୟ ବୁଝାଇଛନ୍ତି । ଭକ୍ତଚରଣ ଠିକ୍ ସେହିପରି ଆକୁଳ ପ୍ରାଣରେ ବିକଳ ନିବେଦନ କରି ଗାଇଛନ୍ତି—

ଦେଖି ଏ ଅନିତ୍ୟ ଅଙ୍ଗ କ୍ଷଣକେ ହୁଅଇ ଭଙ୍ଗ
ଚିର ହୋଇ କେବେହେଁ ନ ରହେ ।
ଧନ ଜନ ତାତ ମାତ ଏ ଯେନ ବିଜୁଳି ମତ
କେହି କାହା ସଙ୍ଗତେ ନ ଯାଏ ।
ଏଣୁ ଭଜ ଗୋବିନ୍ଦ ଚରଣ
ନ ପାଇବ ଯମର କଷଣ ।

ନାମ ପରିବର୍ତ୍ତନରେ ଭକ୍ତିର ସୂଚନା:—

ବୈଷ୍ଣବ ଧର୍ମରେ ଦୀକ୍ଷିତ ହେବା ପୂର୍ବରୁ କବିଙ୍କର ନାମ ଥିଲା ବୈରାଗୀ

ଚରଣ ପଟ୍ଟନାୟକ । ଧର୍ମଦୀକ୍ଷା ପରେ ଭକ୍ତିମାର୍ଗର ପ୍ରବୀଣ ଉପାସକ ରୂପେ ସେ ନିଜକୁ ପରିଚିତ କରାଇବାକୁ ଇଚ୍ଛା କରିଥିଲେ । ସେଥିପାଇଁ ତାଙ୍କ ନାମରେ ପରିବର୍ତ୍ତନ ଘଟିଥିଲା । ପ୍ରାଚୀନ ଶାସ୍ତ୍ରମାନଙ୍କରେ ଭଗବାନଙ୍କ ମୁଖରେ ପ୍ରକାଶ ପାଇଛି—

ମଦ୍‌ଭକ୍ତା ଯତ୍ର ଗାୟନ୍ତି
ତତ୍ର ତିଷ୍ଠାମି ନାରଦ ।

ଭଗବାନ ଭକ୍ତପ୍ରିୟ ଓ ଭକ୍ତର ଅନୁବର୍ତ୍ତୀ । ଭଗବାନଙ୍କୁ ପାଇବାକୁ ହେଲେ ଭକ୍ତମାନଙ୍କର ଓ ସାଧୁମାନଙ୍କର ଅନୁଗ୍ରହ ଅପରିହାର୍ଯ୍ୟ । ତାଙ୍କର ସେବା କରିବାକୁ ହେଲେ ସେହିଁ ନିଷ୍ଠା ଓ ସାଧନା ଆବଶ୍ୟକ ତାହା ଭକ୍ତ ଠାରେ ଥିବା ଉଚିତ । ଏ ଦୃଢ଼ ଧାରଣାରେ ଭକ୍ତପ୍ରବର ଭକ୍ତଚରଣ ନିଜକୁ କେବଳ ଭକ୍ତମାନଙ୍କର ଦାସ କରି ନାହାନ୍ତି । ସେମାନଙ୍କର ଚରଣ ଦାସ ବା ପାଦ-ସେବକ ମନେ କରିଛନ୍ତି । ବହୁବାର କାବ୍ୟରେ ଏ ମନୋ-ଭାବର ଉଲ୍ଲେଖ ହୋଇଛି । ଅଠେଇଶ ଛାନ୍ଦରେ ଗୋପୀମାନଙ୍କ ସଙ୍ଗେ ଆଳାପ ଶେଷ କରି ଉଦ୍ଧବ ଯେତେବେଳେ ଶୟନ କରିବାକୁ ଗଲେ କବି ସେତେବେଳେ ନିଜକୁ ସ୍ଥିର ରଖି ପାରିଲେ ନାହିଁ । ଉଦ୍ଧବ ଯେ ଶ୍ରେଷ୍ଠ ଭକ୍ତ କହିବା ବାହୁଲ୍ୟ ମାତ୍ର । ସେହି ଭଳି ଭକ୍ତଙ୍କର ଚରଣ ସେବାହିଁ କବିଙ୍କର କାମ୍ୟ । ଏ ପ୍ରସଙ୍ଗରେ କବି ଯାହା ବର୍ଣ୍ଣନା କରିଛନ୍ତି ପାଠ କଲେ ହୃଦୟରେ ଅପୂର୍ବ ଭାବ ଜାତ ହୁଏ । ମାତ୍ର ଦୁଇଶତ ବର୍ଷ ତଳର କବି କାଳର ଅନୁକ୍ଷେପ ଗର୍ଭରେ ଦ୍ୱାପର ଯୁଗର ସେପେ ସମୟକୁ ଗତି କରିଛନ୍ତି । ଉଦ୍ଧବଙ୍କର ଶୟନ କକ୍ଷରେ ପ୍ରବେଶ କଲା ପରି ଅନୁଭବ କରି ଲେଖିଛନ୍ତି—

'ଭକ୍ତଚରଣ ବସିଲା ତଳେ
ପାଦ ଚିପଇ ଆନନ୍ଦ ହେଲେ
ସାଧ ସେବଇ କି ଭାଗ୍ୟବଳେ ।'

ଭକ୍ତ ସମାଜରେ ଏ ପ୍ରକାର ଗଭୀର ଅନୁପ୍ରାଣନ ଓ ଭକ୍ତ-ତାଦାତ୍ମ୍ୟ କିପରି ଉଚ୍ଚତରରେଣ୍ୟ ତାହା ରସିକ ଭକ୍ତମାନେହିଁ ଜାଣନ୍ତି ।

ଭକ୍ତକବିଙ୍କ ଆତ୍ମ-ଗ୍ଲାନି—

କେବଳ ସେତିକି ନୁହେଁ, କବି 'ତୃଣାଦପି ସୁନୀଚେନ' ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ବିନମ୍ର ପ୍ରାଣରେ ପୁଣି ଗାଉଛନ୍ତି—

ହେ ସାଧୁମାନେ
ଅଧମକୁ ଦେଖି ଦୟା କର
ତୁମ୍ଭ ପାଦ ଦିଅ ମୋର ଶିର ।

ପ୍ରାଣର ସରଳତା ନିବେଦନର କୋମଳତା ଓ ଅନ୍ତରର ଶୁଦ୍ଧତା ଯେପରି ଉକ୍ତ ପଦ୍ୟରେ ପ୍ରକଟିତ ତାହା କାହାର ହୃଦୟରେ ଭକ୍ତିର ପୁଲକ ସଞ୍ଚାର ନ କରିବ ।

ମୁକ୍ତି କାମ୍ୟ ନୁହେଁ :—

ଆଲୋଚନାରୁ ଜଣାଯାଏ କବି ଥିଲେ ଗୌଡ଼ୀୟ ମତାବଲମ୍ବୀ । ଗୌଡ଼ୀୟ ବୈଷ୍ଣବମାନଙ୍କର ଜନକତତ୍ତ୍ୱକୁ ମୁକ୍ତ ବଳରେ ଖଣ୍ଡବିଖଣ୍ଡ କରିବାକୁ ସେ ଯେଉଁ ପ୍ରଚେଷ୍ଟା କରିଛନ୍ତି ତହିଁରୁ ତାଙ୍କର ଭକ୍ତିର ଗଭୀରତା ସଙ୍ଗେ କବି ବାଦ୍ଧ୍ୱନିର ପରିଚୟ ମଧ୍ୟ ମିଳେ । ଛବିଶ ଓ ଅଠେଇଶ ଛାନ୍ଦରେ ଭକ୍ତିର ମାହାତ୍ମ୍ୟ ଶତ ମୁଖରେ ବର୍ଣ୍ଣିତ ହୋଇଅଛି । ବୈଷ୍ଣବ ଗ୍ରନ୍ଥମାନଙ୍କରେ ମୁକ୍ତି କୈତବ ରୂପେ ଗୃହୀତ ହୋଇଥିବାରୁ ସେ ସେହି ଭକ୍ତହିଁ କାମନା କରି ମୁକ୍ତିକୁ ହେୟ ରୂପେ ଦୂରରୁ ତ୍ୟାଗ କରିଛନ୍ତି । ଭକ୍ତକବି ଅନନ୍ୟ ଯେଉଁପରି ମୁକ୍ତି ତୁଳନାରେ ଭକ୍ତିର ଗୌରବ ବର୍ଣ୍ଣନ କରି କରୁଣ ନିବେଦନ କରିଛନ୍ତି—

ସାଯୁଜ୍ୟ ଗତି ଅଣିମାଦି ଯୋଗ ମୁକ୍ତି
ଐଶ୍ୱର୍ଯ୍ୟାଦିରେ ମୋ ଚିତ୍ତ ନୋହିବ ଆସକ୍ତି ।

ସେହିପରି ଗୋପୀମାନଙ୍କ ମୁଖରେ ଭକ୍ତଚରଣ ପ୍ରକାଶ କରିଅଛନ୍ତି—

ତେମନ୍ତ ମୁକତି ଗୃହ          ପ୍ରେମ ବନେ ଯାନ ହରି
ଭଗତ ପଛରେ ବୁଲୁଥାଇ
ଦାସକୁ ଅଟନ୍ତି ହୀନ          ସେଗୁଡ଼ାକ କେତେ ଯେନ
ଆମ୍ଭଙ୍କୁ ସେ ମାନ ନ ରୁଚଇ ହେ ହରିଦୂତ ।
(୨୭।୮)

ଭକ୍ତଙ୍କ ମତରେ ଭକ୍ତି ତୁଳନାରେ ମୁକ୍ତି ନିତାନ୍ତ ଯାନହୀନ । ସେଥିପାଇଁ କେବଳ ହରିଲୀଳା କୀର୍ତ୍ତନରେ ସେ ପ୍ରବୃତ୍ତ ହୋଇ ନାହାନ୍ତି, ପ୍ରତ୍ୟେକର ମନ୍ଦ୍ର ନାଦରେ ପାଠକମଣ୍ଡଳୀକୁ ଅନୁପ୍ରାଣିତ କରିବାକୁ ପ୍ରଚେଷ୍ଟା କରିଅଛନ୍ତି ।

ଭକ୍ତଚରଣଙ୍କ ହୃଦୟରେ ଭକ୍ତିର ଉଦ୍ବେଳ ତରଙ୍ଗ ମାଳା ଯେପରି ଉଦ୍‌ଧିତ ହୋଇଥିଲା କାବ୍ୟରେ ସେ ଗୁଡ଼ିକର ପ୍ରତିବିମ୍ବ ସେହିପରି ପତିତ ହୋଇଅଛି । ଗୋପୀ-ଭାବକୁ ଭକ୍ତିର ଶ୍ରେଷ୍ଠ କାମ୍ୟ ମନେ କରି କବି ତାଙ୍କରେ ଅଭିଭୂତ ହୋଇଛନ୍ତି । ଅଭିମନ୍ୟୁ ଯେପରି ଗାଇଛନ୍ତି—

'ରାଧାଭାବ ଭାବ ଭାବ ଏ ଜୀବ ଯିବ
ସତେ ଏ ଭାଗ୍ୟ କି ଉପୁଜିବ ।'

ଗୋପୀ-ଭାବ:—

ଭକ୍ତଚରଣ ସେହିପରି ନିଜର ଆନ୍ତରିକ ଇଚ୍ଛା ଉଦ୍ଧବଙ୍କ ଉକ୍ତି ଛଳରେ ଶ୍ରୀକୃଷ୍ଣଙ୍କ ସମକ୍ଷରେ ପ୍ରକାଶ କରିଛନ୍ତି । ଗୋପୀ-ପ୍ରେମ-ପାଗଳ ଉଦ୍ଧବଙ୍କ ମୁଖରୁ ଝରି ପଡ଼ୁଛି—

ଏବେ ଏହି କୃପା କର          ଅଙ୍ଗ ବଂଶ ଶିଖୀଧର
ଫେରିଯିବ ସେହି ବୃନ୍ଦାବନ
ଗୋପୀଙ୍କ ସଙ୍ଗରେ ବସିଥିବ
ଏଥେ ଥାଇ କି ସୁଖ ଭୁଞ୍ଜିବ ।

କରୁଥିବ ତାଙ୍କ କର୍ମ ସାଧୁଥିବ ତାଙ୍କ ଧର୍ମ
କାନ୍ଦୁଥିବ ତାଙ୍କର ପରାଏ ।

X X X

କୃଷ୍ଣବୋଲ ଗାଉଥିବ ମୁଖେ
ଥିବ ସେ ଗୋପୀଙ୍କ ପାଖେ ପାଖେ ।

ଭକ୍ତର ପ୍ରାବଲ୍ୟରେ କବି ଗୋପପୁରରେ ଅବସ୍ଥାନ ଏବଂ ସେମାନଙ୍କ ସହ କୃଷ୍ଣକଥା କୀର୍ତ୍ତନ ପାଇଁ ଏ ଯେଉଁ ବ୍ୟାକୁଳତା ପ୍ରଦର୍ଶନ କରିଛନ୍ତି ତାହାର ପଟାନ୍ତର ନାହିଁ ।

କେବଳ ସେତିକି ନୁହେଁ ଯେଉଁଠାରେ କୃଷ୍ଣଚରିତ ଅନୁଯାୟୀ କୌଣସି ଭକ୍ତ ଶ୍ରୀକୃଷ୍ଣଙ୍କ ସମ୍ପର୍କରେ ଆସିଛି ଏବଂ ନିଜର ଇଚ୍ଛାରେ ହେଉ ବା ମତବିରୁଦ୍ଧରେ ହେଉ କୌଣସି କର୍ମ ଅନୁଷ୍ଠାନ କରିଅଛି, କବି ସେଠାରେ ଭକ୍ତଠାରୁ ନିଜକୁ ଅଭିନ୍ନ ମନେକରି ତାହାର କର୍ମରେ ନିଜକୁ ନିଜକୁ ବିଜଡ଼ିତ କରି ଦେଇଛନ୍ତି । ଗଭୀର ତନ୍ମୟତା ନ ଥିଲେ ଏ ପ୍ରକାର ମଧୁର ବର୍ଣ୍ଣନା ସମ୍ଭବ ହୋଇ ନପାରେ । ଶ୍ରୀକୃଷ୍ଣଙ୍କୁ ଗୋପପୁରରୁ ନେବାବେଳେ ଅକ୍ରୁର ରଥସଜ୍ଜାରେ ବ୍ୟାପୃତ—କାବ୍ୟରେ ଏଥିର ବର୍ଣ୍ଣନା ଅତ୍ୟନ୍ତ ମନୋରମ । ଭକ୍ତଚରଣ ଭକ୍ତ ଅକ୍ରୁର ଠାରୁ ନିଜର ଅଭେଦ ଜ୍ଞାନରେ ଅନୁପ୍ରାଣିତ ହୋଇ କହିଛନ୍ତି—

'ଭକ୍ତ ଦାସ ସାଜେ ରଥ ତାହାର ।'

ଶ୍ରୀକୃଷ୍ଣଙ୍କ ମଥୁରା ଗମନରେ ବ୍ରଜବାଳାମାନଙ୍କର ହୃଦୟ ଯେତିକି ଦୁଃଖାଭିଭୂତ କବିଙ୍କର ଅନ୍ତର ତତୋଧିକ ଶୋକନିମଗ୍ନ । ବିଦୀର୍ଣ୍ଣହୃଦୟା ଗୋପାଙ୍ଗନାମାନଙ୍କ ମଧ୍ୟରେ କବି ନିଜକୁ ସ୍ଥାପନ କରି ବ୍ୟଥିତ ପ୍ରାଣରେ ଗାଇଛନ୍ତି—

ଚରଣ ଧରି ଭକ୍ତ ଦାସ କାନ୍ଦଇ
ବେଢ଼ି କାନ୍ଦନ୍ତି ସକଳ ଜନ ।

ପୁଣି ଶ୍ରୀକୃଷ୍ଣ ରଥରେ ଆରୋହଣ କଲେ ପରେ—

ଯହୁଁ ରଥେ ଚଢେ ଗୋପୀନାଥ
ଭକ୍ତ ଦାସ ହୋଇଲୁ ଅନାଥ ।

୪. କବିଙ୍କ ଭାବ-ବିହ୍ୱଳତା :—

ମଥୁରାପୁରରେ ଶ୍ରୀକୃଷ୍ଣଙ୍କର ପ୍ରବେଶ ଘୋର ଚାଞ୍ଚଲ୍ୟର କାରଣ ହୋଇଥିଲା । କେବଳ ମଥୁରାବାସୀମାନେ ଶ୍ରୀକୃଷ୍ଣଙ୍କର ରୂପ ମାଧୁରୀ ଦର୍ଶନ କରି ବିମୁଗ୍ଧ ହୋଇ ନାହାନ୍ତି—କବି ସେହି ବିମୁଗ୍ଧ-ମଣ୍ଡଳୀରେ ନିଜକୁ ମଧ୍ୟ ସଂଯୋଜିତ କରିଅଛନ୍ତି । ତା ନ ହୋଇଥିଲେ ବୋଧହୁଏ ଲେଖି ନ ଥାନ୍ତେ—

'ବୋଲେ ବଇଷ୍ଣବୀ ଭକତଚରଣ
ଦେଖି ମନ ହେଲା ଅଠଭ ।'

ମଥୁରାପୁରରେ ଶ୍ରୀକୃଷ୍ଣଙ୍କର ବିବିଧ ଲୀଳା କବି ମନୋନୟନରେ ଦର୍ଶନ କରିଅଛନ୍ତି । ରାମକୃଷ୍ଣ ବେନି ସହୋଦରଙ୍କ ଶୟନ ପରେ କବି ସେଠି ଯେପରି ଦେଶ ଓ କାଳର ବ୍ୟବଧାନ ଛିନ୍ନ କରି ମଥୁରାରେ ପ୍ରବିଷ୍ଟ ହୋଇଅଛନ୍ତି ଏବଂ ଶୟନ କକ୍ଷରେ ପ୍ରବେଶ କରି ଲେଖିଛନ୍ତି-( ! ! )—

ନିଦ୍ରା ଗୁରୁତର
ଭକ୍ତଚରଣ ଚାପଇ ପୟର ।

ଶ୍ରୀକୃଷ୍ଣ ମତ୍ତ ଦନ୍ତାବଳ ନିକଟରେ କେବଳ ମଥୁରାର ଦର୍ଶକମାନେ ସମ୍ଭାବିତ ବିପଦରେ ଚିନ୍ତାଗ୍ରସ୍ତ ହୋଇ ନାହାନ୍ତି—ହୋଇଛନ୍ତି କବି ଭକ୍ତଚରଣ ମଧ୍ୟ । ତେଣୁ ବିଚଳିତ ଚିତ୍ତରେ କହି ପକାଇଛନ୍ତି—

ହାତୀ ମାରିନେ
ବୋଲେ କୃଷ୍ଣ ଦାସ କମ୍ପୁଛି ଦେହ ।

ଭକ୍ତ ସଙ୍ଗ ସମପ୍ରାଣତା :—

ଏସମସ୍ତ ଆଲୋଚନାରୁ ସ୍ପଷ୍ଟ ଜଣାଯାଏ ଶ୍ରୀକୃଷ୍ଣ ଚରିତ ଚିନ୍ତନ ବେଳେ କବି ବୈଷୟିକ ଜଗତର ବାସ୍ତବତା ପ୍ରତି ଦୃଷ୍ଟି ଦେଉ ନ ଥିଲେ । ଚରିତ୍ରମାନଙ୍କ ସଙ୍ଗେ ନିଜର ଅଭିନ୍ନତା ଅନୁଭବ କରୁ ନ ଥିଲେ ଅକ୍ରୂର, ଯଶୋଦା, ବ୍ରଜବାଳା ଓ ଉଦ୍ଧବ ପ୍ରଭୃତି ଚରିତ୍ରଙ୍କ ଚିତ୍ରଣ ଏତେ ପ୍ରାଣ-ସ୍ପର୍ଶୀ ହୋଇ ନଥାନ୍ତା । ଦ୍ୱିତୀୟ ଛାନ୍ଦରେ ବଂସକୃତ ଅକ୍ରୂରର ଯେଉଁ ବ୍ୟଗ୍ରତା ଓ ଉତ୍କଣ୍ଠା ବର୍ଣ୍ଣିତ ତାହା କବିପ୍ରାଣର ଅନ୍ୟତମ ଅଭିବ୍ୟକ୍ତି ମାତ୍ର । ବାସ୍ତବରେ ଭକ୍ତଚରଣଙ୍କୁ ସେହି ସ୍ଥଳରେ ପରୀକ୍ଷା କରାଯାଇ ପାରେ ।

ମୁଁ ହୀନ ମୂଢ଼ ପାପିଷ୍ଠ ଗଢ଼
                ନାହିଁ ମୋର ଭାଗ୍ୟ
ସତେକି ଥରେ ନେତ୍ର ପଥରେ
                ଦେଖିବି ଗୋପ ମାର୍ଗ ।

ଏହା ଅକ୍ରୂର ମୁଖରେ ପ୍ରକାଶ ପାଇଥିଲେ ହେଁ କବିଙ୍କ ନାଟିକା-ସ୍ପନ୍ଦନ ଏଥିରୁ ସହଜରେ ଉପଲବ୍ଧି କରାଯାଇ ପାରେ । ଷଷ୍ଠ ଛାନ୍ଦର ଯଶୋଦା ବିଳାପ ଅନ୍ତରାଳରେ ବାତ୍ସଲ୍ୟ ହିଁ ଅମନ୍ଦ ମନ୍ଦାକିନୀ ପରି ପ୍ରବାହିତ । ୭ମ, ୯ମ, ଓ ୧୨ଶ ଛାନ୍ଦରେ ଗୋପୀମାନଙ୍କର ଏବଂ ୩୦ଶ ଛାନ୍ଦରେ ଉଦ୍ଧବଙ୍କର ଯେଉଁ ଖେଦ ରୂପାୟିତ, ତାହା କରୁଣ ରସର ଗୋଟିଏ ଗୋଟିଏ ଜଳନ୍ତ ଉତ୍ସ । ନିଜର ପ୍ରାଣ କାନ୍ଦି ଉଠି ନଥିଲେ କବି ଏ କରୁଣ ନିର୍ଝର ସୃଷ୍ଟି କରିବାକୁ କଣ ସମର୍ଥ ହୋଇଥାନ୍ତେ ?

ଏ ସମସ୍ତ ଆଲୋଚନାରୁ କବିଙ୍କୁ କେବଳ ଜଣେ ଭକ୍ତ-କବି କହିବା ସଙ୍ଗତ ହେବନାହିଁ—ସେ ଥିଲେ ଭକ୍ତପ୍ରବର । ଉତ୍କଳର ଶତଶତ ଭକ୍ତ-କବିଙ୍କ ମଧ୍ୟରେ ତାଙ୍କର ଆସନ ସର୍ବୋଚ୍ଚ ହୋଇ ନପାରେ । ତଥାପି ଭକ୍ତ କବିମାନଙ୍କ ମଧ୍ୟରେ ସେ ଯେ ଅନ୍ୟତମ ସମୁଚ୍ଚ ଆସନର ଅଧିକାରୀ, କହିବା ବାହୁଲ୍ୟ ମାତ୍ର । ମଥୁରାମଙ୍ଗଳ ମୁଖବନ୍ଧରେ ୨୭ଶ ଛାନ୍ଦର ବିସ୍ତୃତ

ପ୍ରସଙ୍ଗରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଲେଖିଛନ୍ତି—

"ଏ ଛାନ୍ଦ ଲେଖିଲା ବେଳେ କବି ଗୋପୀ ଭାବରେ ମୁଗ୍ଧ, ମଗ୍ନ ହୋଇ ପଡିଥିବା ସ୍ପଷ୍ଟ ଜଣା ପଡୁଅଛି । ଆଶ୍ଚର୍ଯ୍ୟ ବିଷୟ, ସେ କିପରି ଆତ୍ମଭାବ ପରିହାର କରି ଏ ସବୁ ଲେଖି ପାରିଥିଲେ । ଭକ୍ତକବିଭକ୍ତଚରଣଙ୍କ ଭକ୍ତିଭାବ କିପରି ଥିଲା, ଏବଂ ସେ କିପରି ଆତ୍ମହରା ହୋଇଥିଲେ, ତାହାର ନିଦର୍ଶନ ରୂପେ ଏହି ଛାନ୍ଦର ୩୬ଶ ପଦ ଉଦ୍ଧାର କଲି ।" ପୁଣି ଶେଷରେ ଲେଖିଛନ୍ତି—"ଭକ୍ତଚରଣ, ତୁମ୍ଭେ ପରମ ଭାଗବତ ଥିଲ । ତୁମ୍ଭର ମଥୁରାମଙ୍ଗଳରେ ଗୋପ ବିଳାପ ଶୁଣିଲ ଯାଉଛି । ସେଥିରେ କି ଅଦ୍ଭୁତ କରୁଣ ସ୍ୱର, ତହିଁରେ ପୁଣି କି ମଧୁର ମୂର୍ଚ୍ଛନା ! ହେ ଭବ୍ୟ ବୀଣା-ବାଦକ ! ଯେ ବାଣୀ ବୀଣାରେ ଧରିଛ, ତାହା ଚିରଦିନ କାଙ୍କ୍ଷ୍ୟ ନୂତନ ରୂପେ ବିରାଜିତ ହୋଇ ଧରାଧାମରେ ରହିବ ଓ ଲୋକଙ୍କମନ ଆକର୍ଷଣ କରିବ ।"



# ଜୀବନ ଦର୍ଶନ

## କବିଙ୍କ ଜୀବନ ଦର୍ଶନରେ ଅନୁଭୂତିର ଗଭୀରତା—

ଜଣେ ପ୍ରବୀଣ ସାହିତ୍ୟ ସମାଲୋଚକ କହିଅଛନ୍ତି, ପ୍ରତ୍ୟେକ ଶ୍ରେଷ୍ଠ କବି ଜଣେ ଉଚ୍ଚ କୋଟିର ଦାର୍ଶନିକ । ଦାର୍ଶନିକତା କବିଙ୍କ ଗଭୀର ଅନୁଭୂତି ଓ ବିଚାରଶୀଳତା ଉପରେ ପ୍ରତିଷ୍ଠିତ । ବାସ୍ତବରେ, କାବ୍ୟ, କବିତା ଆତ୍ମକୈନ୍ଦ୍ରିକ ହେଉ ବା ବସ୍ତୁଗତ ହେଉ, ତହିଁରେ କବିଙ୍କ ଅନୁଭୂତି-ପ୍ରତିଷ୍ଠିତ ଜୀବନ ଦର୍ଶନ ଆବିଷ୍କାର କରିହେବ । କାବ୍ୟ କେବଳ ଆନନ୍ଦଦାୟକ ବା ରସ-ପରିବେଷକ ଶବ୍ଦ ସମଷ୍ଟି ନୁହେଁ, କିମ୍ବା ଛନ୍ଦ-ବନ୍ଧ ଶବ୍ଦ ବିଳାସର ଯନ୍ତ୍ର ନୁହେଁ । କବିଙ୍କ ଅନ୍ତରରେ ଯେଉଁ ମଞ୍ଜୁଳ ଭାବରାଜି ଉଦ୍ବେଳିତ ହୋଇ ଉଠେ, ତାହା ମଧ୍ୟ ଲକ୍ଷ୍ୟହୀନ କିମ୍ବା ଅସାର୍ଥକ ନୁହେଁ । ପ୍ରତିଭାଶାଳୀ କବିମାନେ ବିଶ୍ୱ ସୌନ୍ଦର୍ଯ୍ୟ ଆକଣ୍ଠ ପାନ କରି ଅଖଣ୍ଡ ରସ-ନିର୍ଝର ସୃଷ୍ଟି କରନ୍ତି ଏବଂ ପ୍ରବୀଣ ଭାବୁକତାରେ କବିତାର ପ୍ରତ୍ୟେକ ପଂକ୍ତି ରସାଣିତ କରି ପାଠକମଣ୍ଡଳୀକୁ ନୂତନ ପନ୍ଥା ଦେଖାଇବାକୁ ଚେଷ୍ଟା କରନ୍ତି । ଶ୍ରୀକୃଷ୍ଣ-ଲୀଳା-ବିଷୟକ କାବ୍ୟମାନଙ୍କରେ କବିମାନେ ଶାସ୍ତ୍ର ପୁରାଣର ଅନୁସରଣ ଓ ପୂର୍ବବର୍ତ୍ତୀ କବିମାନଙ୍କର ଅନୁଧାବନ କରୁଥିବାରୁ ସେମାନଙ୍କ କାବ୍ୟ କୌଶଳ ବହୁ ପରିମାଣରେ ଗତାନୁଗତିକ ହୋଇଯାଏ । ପୂର୍ଣ୍ଣତଃ ମୌଳିକ ଉପାଦାନର ଅବଲମ୍ବନରେ କାବ୍ୟ ରଚନା କରିଥିଲେ କବି ନିଜର ଚିନ୍ତାଶୀଳତା କାବ୍ୟରେ କଥାବସ୍ତୁର ବିନ୍ୟାସରେ, ଯେତେ ଦୂର ଦେଖାଇ ପାରି ଥାଆନ୍ତେ, ତାହା ଏ ପ୍ରକାର କାବ୍ୟ-

ମାନଙ୍କରେ ଅପେକ୍ଷାକୃତ ସୀମିତ ହୋଇପଡ଼େ । ହେଲେହେଁ ସୁଦକ୍ଷ କାବ୍ୟଶିଳ୍ପୀ ବିଶ୍ୱ ବିଧାତାଙ୍କ ତୁଲ୍ୟ ସୃଜନ କ୍ଷମତାଶାଳୀ । ବିଧାତା ନିଜର ସଂସାରରେ କେବଳ ସରୋବରରେ ଓ ପଙ୍କରେ ପଦ୍ମ ଫୁଲ ଫୁଟାଇ ପାରନ୍ତି, କିନ୍ତୁ କବି ରୁକ୍ଷ ମରୁଭୂମିରେ ମଧ୍ୟ ସହସ୍ର ସହସ୍ର ପଙ୍କଜ ଫୁଟାଇ ପାରନ୍ତି । ଗତାନୁଗତିକ ଭାବରେ ଅନ୍ୟର ପଦାଙ୍କ ଅନୁସରଣ କଲେହେଁ ରସବିନ୍ୟାସ, ଶବ୍ଦ-ସଂଯୋଜନ, ଛନ୍ଦ-ପ୍ରୟୋଗ ଓ ଚରିତ୍ର-ଚିତ୍ରଣରେ କବି ନିଜର ସ୍ୱାଧୀନତା ପ୍ରକଟନ କରି, ମୌଳିକ କାବ୍ୟ ତୁଲ୍ୟ ନିଜ କାବ୍ୟକୁ ଚମତ୍କାର, ଗୁରୁତ୍ୱପୂର୍ଣ୍ଣ ଓ ତତ୍ତ୍ୱବୋଧକ କରି ପାରନ୍ତି । ମଥୁରାମଙ୍ଗଳ, ଓଡ଼ିଶାର ଅନ୍ୟ ଅନେକ କାବ୍ୟ ପରି ଶ୍ରୀକୃଷ୍ଣ ଲୀଳାର ଏକାଂଶ ଚିତ୍ରଣରେ ସୀମାବଦ୍ଧ । ଗୋପଲୀଳାର ସଂକ୍ଷିପ୍ତ ସାର ଏଥିରେ ବର୍ଣ୍ଣିତ ହୋଇଥିଲେ ହେଁ ତାହା ଗୌଣ ଓ ପ୍ରାସଙ୍ଗିକ ମାତ୍ର ।

କାବ୍ୟରେ କବିଙ୍କ ଜୀବନ ଦର୍ଶନ ଆଲୋଚନା ବିଶେଷ ପରିମାଣରେ ଆଧୁନିକ ସମାଲୋଚନାର ଗୋଟିଏ ମୁଖ୍ୟ ଅଙ୍ଗ । ପ୍ରାଚୀନ ଯୁଗର କବିମାନେ ସ୍ୱରଚିତ କାବ୍ୟମାନଙ୍କରେ ଯେ ନିଜ ନିଜର ଜୀବନ ଦର୍ଶନ ପ୍ରକାଶ କରି ନ ଥିଲେ ବା କରୁ ନ ଥିଲେ ତାହା ନୁହେଁ । ହେଲେହେଁ ଆଧୁନିକ ଲେଖକମାନେ ଏଥି ପ୍ରତି ଯେତେ ଦୃଷ୍ଟି ଦିଅନ୍ତି ବୋଧହୁଏ ପ୍ରାଚୀନ ଲେଖକମାନେ ସେତେ ଦୃଷ୍ଟି ଦେଉ ନ ଥିଲେ । କବି ଯେଉଁ କାବ୍ୟ ସୃଷ୍ଟି କରନ୍ତି, ତହିଁରେ ଆପେ ଆପେ ତାଙ୍କର ମନୋଭାବ, ଅଭିରୁଚି, ସାମାଜିକ ଚିନ୍ତା, ସାଂସ୍କୃତିକ ମନୋବୃତ୍ତି ଏବଂ ଆଦର୍ଶ ପ୍ରଭୃତି ଫୁଟି ପଡ଼େ । ସେ ସବୁ ହୁଏ ତ କୌଣସି ଗୋଟିଏ ସ୍ଥଳରେ ପ୍ରକାଶ ପାଇ ନ ପାରେ— ପାଇବା ସମ୍ଭବ ମଧ୍ୟ ନୁହେଁ । ତେବେ ତାଙ୍କର ଗୋଟିଏ କାବ୍ୟ ଆମୂଳଚୂଳ ବିଚାର କଲେ କିମ୍ବା ସମସ୍ତ କବିତା ଓ ବିଭିନ୍ନ ରଚନା ଏକତ୍ର ବିଶ୍ଳେଷଣ କଲେ ଜଣାଯାଏ, ସେ କାବ୍ୟ କାହିଁକି ରଚନା କରିଥିଲେ, କେଉଁଠାରୁ ପ୍ରେରଣା ପାଇଥିଲେ, ସମାଜକୁ ସେ କି ଦୃଷ୍ଟିରେ ଦେଖୁଥିଲେ ଏବଂ ମଣିଷର ଚରମ ଲକ୍ଷ୍ୟ କ'ଣ ହୋଇପାରେ ବା ହେବା ଉଚିତ । ସାମାଜିକ ପରିପାର୍ଶ୍ୱ କବିଙ୍କୁ ପ୍ରଭାବିତ କରେ । କବି ଯେତେବେଳେ ପୂର୍ବରୁ ସେହି

ପ୍ରଭାବରେ ପ୍ରଭାବିତ ହୁଅନ୍ତି, ସେତେବେଳେ ଅବା ସେଇ ପ୍ରଭାବରେ ନାନା ସମସ୍ୟା ଚିନ୍ତା କରି ସେଗୁଡ଼ିକର ସମାଧାନରେ ସ୍ୱତନ୍ତ୍ର ମାର୍ଗ ଅବିଷ୍କାର କରିବାକୁ ଚେଷ୍ଟା କରନ୍ତି । ସେହି ଚେଷ୍ଟା କାବ୍ୟରେ ଅଭି-ପ୍ରକାଶ କରେ ଏବଂ କବିଙ୍କ ଅନ୍ତର ପରୀକ୍ଷାର ପ୍ରଧାନ ସମ୍ବଳ ରୂପେ ସମାଲୋଚକମାନଙ୍କର ସହାୟକ ହୁଏ ।

ଉକ୍ତକବି ଭକ୍ତଚରଣଙ୍କର କାବ୍ୟର କଥାବସ୍ତୁ ସଙ୍ଗେ ତାଙ୍କର ଜୀବନ-ଦର୍ଶନ ଓତପ୍ରୋତ ଭାବରେ ବିଜଡ଼ିତ । କାବ୍ୟର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସବୁଠାରେ ଦେଖାଯାଏ ତାଙ୍କର ଦାର୍ଶନିକ ମତବାଦ ଓ ସେହି ମତବାଦର ଅନୁରୂପ ବକ୍ତବ୍ୟ-ପ୍ରକାଶ କାବ୍ୟର ପ୍ରାରମ୍ଭରେ କବିକଣ୍ଠ-ମୁଖରିତ ହୋଇଉଠିଛି—

ଏଣୁ ବିଚାର କରଇ ମନରେ
କିପାଁ । ମନୁଷ ଏ ଭବ ବନରେ
ଧନ ଜନ ଜୀବନ ଥିର ନୋହେ
ପାପ ଅନଳ ପିଣ୍ଡ-କାଷ୍ଠ ଦହେ
ଲୋଭ ସକଳ ଦ୍ରବ୍ୟ ପ୍ରବର୍ତ୍ତାଇ
କାମ କାମିନୀ ମଦରେ ମତାଇ

× ×

ଏଣୁ ବିଚାର କଲି ମୋର ଚିତ୍ତେ
ବୁଦ୍ଧି ନ ଦିଶେ ତରିବି କେମନ୍ତେ ।

କବି ଧନିକ ପରିବାରରେ ଜନ୍ମ ଗ୍ରହଣ କରି ଥିବାର କୌଣସି ପ୍ରମାଣ ନାହିଁ । ସାମାଜିକ ଜୀବନରେ ଆର୍ଥିକ ଅନାଟନ ଓ ନୈସର୍ଗିକ ଧର୍ମପ୍ରାଣତା କବିଙ୍କୁ ଧାର୍ମିକ ଜୀବନର ସୁନିର୍ମଳ ପଥରେ ଗତିକରିବାକୁ ପ୍ରେରଣା ଦେଇଥିଲା । ତୀର୍ଥ ପର୍ଯ୍ୟଟନ କରି ହିନ୍ଦୁ ଜଗତର ଚିରକାମ୍ୟ ପୁଣ୍ୟ ଅର୍ଜ୍ଜନ କରିବାକୁ କବି ମନ ବଳାଇଥିଲେ । ନାନା ବାଧା ବିଘ୍ନ ଓ କ୍ଳେଶ ସହ୍ୟ

କରି ପରିବ୍ରାଜକରେ ଭାରତର ନିସର୍ଗ ରମଣୀୟ ଓ ପୁରାଣ-ପ୍ରସିଦ୍ଧ ବହୁ ସ୍ଥଳ ସେ ଭ୍ରମଣ କରିଥିଲେ । ବହୁକାଳ ବ୍ୟାପୀ ପରିଭ୍ରମଣ ମଧ୍ୟରେ ତାଙ୍କର ଅନୁଭୂତି ଯେପରି ବହୁମୁଖୀ ସେପରି ଗଭୀର ହୋଇଥିଲା । ଅତୀତ କୀର୍ତ୍ତି ମାନଙ୍କର ଧ୍ୱଂସାବଶେଷ ଦେଖି ଏବଂ କୀର୍ତ୍ତିଶାଳୀ ବ୍ୟକ୍ତିମାନଙ୍କର ହୁଏ ତ ବିପତ୍ତି ବା ବିନାଶ ବାର୍ତ୍ତା ଶୁଣି ସଂସାରର ଅନିତ୍ୟତା ସଂପର୍କରେ ତାଙ୍କର ଦୃଢ଼ ଧାରଣା ଜାତ ହୋଇଥିଲା । ଗଭୀର ଅନୁଭୂତିହିଁ ଉଚ୍ଚ ଦାର୍ଶନିକ ଚିନ୍ତାର ଜନନୀ । ସେ ସୁଦକ୍ଷ ଚିକିତ୍ସକ ମଧ୍ୟ ଥିବା କିମ୍ବଦନ୍ତୀରୁ ଅନୁମିତ ହୁଏ । ତେଣୁ ରୋଗ ଚିକିତ୍ସା ବେଳେ ଦାରୁଣ ଦୁଃଖ-ପୀଡ଼ିତ ବହୁ ବ୍ୟକ୍ତିଙ୍କର ସଂସ୍ପର୍ଶରେ ସେ ଆସିଥିଲେ । ହୁଏ ତ ସେତିକି ବେଳେ ସଂସାରର ଦୁଃଖପୂର୍ଣ୍ଣତା, ମାନବ ଶକ୍ତିର ସସୀମତା ଓ ଭାଗ୍ୟବାଦର କାର୍ଯ୍ୟକାରିତା ତାଙ୍କ ଅନ୍ତରରେ ସ୍ପଷ୍ଟ ରୂପେ ପ୍ରତିଭାତ ହୋଇଥିଲା । ବୋଧହୁଏ ସେହି କାରଣରୁ 'ମନବୋଧ ଚଉତିଶା' ପରି ସୁଲଳିତ କବିତା ବୈରାଗ୍ୟ ଚିନ୍ତାରେ ରସାଣିତ ହୋଇ ତାଙ୍କର ଲେଖନୀରୁ ଝରି ପଡ଼ିଥିଲା । 'ମନବୋଧ ଚଉତିଶା'ରେ ମାନବର ଆଡ଼ମ୍ବର ଓ ଆସ୍ଫାଳନ ଯେଉଁପରି ଭାବରେ ବର୍ଣ୍ଣିତ ତାହା ପାଠ କଲେ ସାଂସାରିକ ସୁଖ ପ୍ରତି ଆସକ୍ତି କମିଯାଏ । ଭାରତର ଶାନ୍ତି-ସମ୍ପନ୍ନ ଭକ୍ତକବି ଭକ୍ତିପୂର୍ଣ୍ଣ ଅନ୍ତରରେ ବହୁ ବର୍ଷ ତଳୁ 'ସଂସାର ଦୁଃଖଗହନାତ୍ ଜଗଦୀଶ ରକ୍ଷ' ଅର୍ଥାତ୍ ହେ ପ୍ରଭୁ ସଂସାରରୂପକ ଦୁଃଖ-ଅରଣ୍ୟରୁ ମତେ ରକ୍ଷାକର ବୋଲି କହୁଛନ୍ତି । ଅନୁଭୂତି ପରେ ଧାର୍ଘ କବି ନିଜ ଜୀବନ ବିଶ୍ଳେଷଣ କରିଛନ୍ତି । ସଂସ୍କୃତ କବି "ମା କୁରୁ ଧନ ଜନ ଯୌବନ ଗର୍ବଂ" ଲେଖିଲା ପରି କବି "ଧନ ଜନ ଜୀବନ ଚିର ନୋହେ" ଲେଖି କ୍ଷଣଭଙ୍ଗୁର ସଂସାରର ଅନିତ୍ୟତାହିଁ ଦର୍ଶାଇଛନ୍ତି ।

ମଥୁରାମଙ୍ଗଳର 'ମଙ୍ଗଳାଚରଣ'ରେ ଶ୍ରୀକୃଷ୍ଣଙ୍କର ଭକ୍ତ-ଅନୁକମ୍ପା ବର୍ଣ୍ଣନା କରି ଲେଖିଛନ୍ତି—

ନାନା ରୂପ ଅରୂପ ତୁହି ହେଉ,
ପ୍ରାଣୀମାନଙ୍କ ହିତେ ଦେହ ବହୁ ।

ଗୋରୁ ବ୍ରାହ୍ମଣ ରକ୍ଷଣେ ତୋ ଭାବ

× × ×

ତୁ ସେ ସର୍ବ କରତା ଭବଗ୍ରାହୀ ।

କବି ଭକ୍ତର ପ୍ରତଚକ୍ଷୁରେ ସଂସାରକୁ ଦେଖୁଥିଲେ । ସଂସାରରେ ଭଗବାନ କୋଟି କୋଟି ପ୍ରାଣୀଙ୍କୁ ଜନ୍ମ ଦେଇ ନିଶ୍ଚିନ୍ତ ରହି ନାହାନ୍ତି । ମାନବ ଭଗବାନଙ୍କର ସଂସାର ପ୍ରତି କର୍ତ୍ତବ୍ୟ ପାଶୋରି ଦେଇ ଅନ୍ୟାୟ କାରବାରରେ ପ୍ରବୃତ୍ତ ହେଉଅଛି । ସେ ନିଜକୁ ନିରଙ୍କୁଶ ମନେକରି ଅନ୍ୟ ମାନଙ୍କୁ ବିପନ୍ନ କରୁଅଛି । ତା ନ ହୋଇଥିଲେ ମହା ଶକ୍ତିଶାଳୀ ଯୋଦ୍ଧା ମାନଙ୍କର ଅକାଳ ମୃତ୍ୟୁ ହୋଇ ନ ଥାନ୍ତା । କବିଙ୍କ ଦୃଢ଼ ବିଶ୍ୱାସ, ମାନବ ଭଗବାନଙ୍କୁ ଭଜନା ନ କଲେ ତାହାର ଗତି ମୁକ୍ତି ଅସମ୍ଭବ ହୋଇ ପଡ଼ିବ । ସମସ୍ତେ ଭଗବାନଙ୍କର ସନ୍ତାନ ଓ ସବୁ ସ୍ଥଳରେ ସକଳ ସମୟରେ ଆମର ସମସ୍ତ କର୍ମ ଭଗବାନଙ୍କର ଦୃଷ୍ଟି ଗୋଚର ହେଉଅଛି । ଏ ଧାରଣା ନ ରହିଲେ ଭଲ କାର୍ଯ୍ୟ କରିବା ପାଇଁ କିମ୍ବା ନିଜ ଶକ୍ତିର ସଦ୍‌ବ୍ୟବହାର କରିବା ପାଇଁ ଇଚ୍ଛା ହେବ ନାହିଁ । କଂସ ପ୍ରବଳ-ପ୍ରତାପୀ ଥିଲା । ତାହାର ନାମ ଶ୍ରବଣରେ ଲୋକଙ୍କର ହୃଦୟ ଥରି ଉଠୁଥିଲା । କିନ୍ତୁ ତାହାର ନିରଙ୍କୁଶ ଶାସନ ବହୁ ଦିନ ଚାଲି ପାରିଲା ନାହିଁ । ଭଗବାନଙ୍କ ରାଜ୍ୟରେ ପାପ ଓ ଅତ୍ୟାଚାରର ସୀମା ଲଙ୍ଘନ କଲେ ଅତ୍ୟାଚାରୀର ବିନାଶ ଅବଶ୍ୟମ୍ଭାବୀ । କବି ଏଇ ଦାର୍ଶନିକ ଚିନ୍ତା ଫୁଟାଇବା ସଙ୍ଗେ ସଙ୍ଗେ କଂସର ପତନ ବର୍ଣ୍ଣନା କରିଛନ୍ତି—

ମହା ପ୍ରତାପୀ ଦୁର୍ମିଳା ନନ୍ଦନ,
ଇନ୍ଦୁମତୀ ଗର୍ଭେ ହେଲା ଜନମ ।
ଗୋରୁ ବ୍ରାହ୍ମଣଙ୍କୁ ଦେଲା କଷଣ,
ଉପର ଦେବତା ପଶିଲେ ଶରଣ ।
ଧର୍ମ ନାଶି ଅଧର୍ମ କର୍ମ କଲା,
ବହୁ ଦିନ ଜୀବଙ୍କୁ ଦୁଃଖ ଦେଲା ।

ଏହାର ପରିଣତିରେ ପ୍ରାଣୀମାନେ ହାହାକାର କଲେ । ଭଗବାନ ଶ୍ରୀକୃଷ୍ଣ ଜନ୍ମ ଗ୍ରହଣ କରି କଂସ ସଂହାର କଲେ । କଂସ କେବଳ ଜଣେ ବ୍ୟକ୍ତି ନୁହେଁ—ସେ ହେଉଛି ଅତ୍ୟାଚାରୀମାନଙ୍କର ପ୍ରତିନିଧି । ଭକ୍ତିବାଦୀ ଓ ଧର୍ମପ୍ରାଣ କବି ସଂସାରକୁ ଭଗବାନଙ୍କର ବିରାଟ ଲୀଳାକ୍ଷେତ୍ର ମନେ କରି ପାପୀମାନଙ୍କୁ ଏଥିରେ ଯେପରି ସତର୍କ କରାଇ ଦେଇଛନ୍ତି ସେହିପରି ଭକ୍ତି ବଳରେ ଭଗବାନଙ୍କୁ ପାଇବା ଲାଗି ଲୋକ ସାଧାରଣଙ୍କୁ ପରାମର୍ଶ ଦେଇଛନ୍ତି ।

ସାମାଜିକ ପରିପାର୍ଶ୍ୱର ପ୍ରଭାବରୁ ନିଜକୁ ମୁକ୍ତ କରିବା ଯେ କୌଣସି କବି ପକ୍ଷରେ ସହଜସାଧ୍ୟ ନୁହେଁ । ଓଡ଼ିଶାର ସ୍ୱାଧୀନତା ଷୋଡ଼ଶ ଶତାବ୍ଦୀରେ ବିଲୁପ୍ତ ହେଲା । ସେହି ସମୟରୁ ଓଡ଼ିଶାର ଧନ ଜୀବନ ବହୁ ବର୍ଷ ପର୍ଯ୍ୟନ୍ତ ସଂକଟାପନ୍ନ ଥିଲା । କେତେକ କାବ୍ୟ ଓ ଚଉତିଶାରେ ମଧ୍ୟ ଲୋକଙ୍କ ଦୁଃଖ ଦୁର୍ଦ୍ଦଶା ଏବଂ ଶାସକମାନଙ୍କର ଅତ୍ୟାଚାର ବର୍ଣ୍ଣିତ ହୋଇଅଛି । ସମରପ୍ରିୟ ଓଡ଼ିଆ ଜାତି ବହୁକାଳ ପର୍ଯ୍ୟନ୍ତ ଅକର୍ମଣ୍ୟ ହୋଇ ପଡ଼ିଥିଲା । ପୁଣି ଚୈତନ୍ୟଙ୍କ ସମୟରୁ ଭକ୍ତିର ପ୍ରବଳ ସ୍ରୋତ ଉତ୍କଳର ପୁର ପଲ୍ଲୀରେ ପ୍ରବାହିତ ହୋଇ ଆସୁଥିଲା । ଶହ ଶହ କବି ଏ ଜଟିଳ ପରିସ୍ଥିତିରେ ମୁକ୍ତିମାର୍ଗ ଅନ୍ୱେଷଣ କରି କରି ସତେ ଯେପରି ରାମ-କୃଷ୍ଣଙ୍କୁ ଶେଷ ଆଶ୍ରୟସ୍ଥଳ ମନେ କରୁଥିଲେ । କାବ୍ୟ ରଚନା ସଙ୍ଗେ ଲୋକଙ୍କର ଚରିତ୍ର ଗଠନ ପାଇଁ ସେମାନେ ଚେଷ୍ଟା କରୁଥିଲେ । ଭଗବାନ-ଙ୍କର ଲୀଳା ବର୍ଣ୍ଣନ ଛଳରେ ସୁକର୍ମ ଓ କୁକର୍ମର ପ୍ରଭେଦ ଲୋକଙ୍କ ମନରେ ଅଙ୍କନ କରୁଥିଲେ । ଭକ୍ତଚରଣଙ୍କ ସଂପର୍କରେ ଏ ସବୁ କଥା କୁହାଯାଇ ପାରେ । ସଂସାରକୁ ଲେଖନୀ ମୁନରେ ସଜାଡ଼ିବା ପାଇଁ ଧର୍ମ ପ୍ରଚାରକ ତୁଲ୍ୟ ବହୁ ନୀତି-ବାଣୀ ଶୁଣାଇଥିଲେ । ସେଥିରୁ ଯେ କୌଣସି ଗୋଟିଏ ଅଂଶ ଉଦ୍ଧାର କଲେ କବିଙ୍କର ହୃଦୟ ତନ୍ତ୍ରୀର ସ୍ପନ୍ଦନ ଅନୁଭବ କରିହେବ । କବି ଗାଇଛନ୍ତି—

ସର୍ବ ଜୀବେ ଦୟା ବହ          ମୁଖେ ହରେକୃଷ୍ଣ କହ
କାମ କ୍ରୋଧ ଲୋଭ ମୋହ ମଦ

ମାଧୁର୍ଯ୍ୟ ସମ୍ପଦେ ଭରି      ତେଜ ଏ ପଡ଼ ଅଭିରି
ସଦା କାଳେ ଭରନ୍ତି ଏ ବାଦ ।

× × × ×

ଦେଖୁଛ ଅଛ ସାକ୍ଷାତେ      ମରି ଯାଉଛନ୍ତି ଯେତେ
କେହି କିଛି ସଙ୍ଗେ ନ ନଅନ୍ତି ।"

× ×

ଯେବେ ଡର ଅଛଇ ଯମକୁ,
ତେବେ ଆଶ୍ରେ କର ଗୋବିନ୍ଦକୁ ।

ଏଥିରେ ଜାତିବାଦୀ ବାବାଙ୍କର ବଳିଷ୍ଠ 'ଆଦର୍ଶ ସୁପରିସ୍ଫୁଟ । ଅନେକ ବୈଷ୍ଣବ ଭକ୍ତ ପଳାୟନପନ୍ଥୀ ପରି ଦେଖାଯାଆନ୍ତି । ସେମାନେ ନିଜର ମୁକ୍ତି କାମନା କରି ଭଗବାନଙ୍କର ଅନାମୟ ଧାମକୁ ଯିବାପାଇଁ ବ୍ୟାକୁଳତା ପ୍ରକାଶ କରିଅଛନ୍ତି । ଭକ୍ତଚରଣ କିନ୍ତୁ ଜୀବେ ଦୟାର ମହାମନ୍ତ୍ର ପ୍ରଚାର କରି ଅଛନ୍ତି । ଭଗବଦ୍ ଗୀତାରେ ଶ୍ରୀକୃଷ୍ଣ ଉପଦେଶ ଦେଇଛନ୍ତି—'

'ଜହି ଶତ୍ରୁଂ ମହାବାହୋ କାମରୂପଂ ଦୁରାସଦମ୍' ଅର୍ଥାତ୍ କାମ କ୍ରୋଧ 'ପ୍ରଭୃତି ରିପୁ ମାନଙ୍କୁ ନାଶ କରିବାକୁ ହେବ । ସଂସାରରେ ବାସ କରି ସଂସାର ଭୋଗ କରିବା ଅନୁଚିତ କିମ୍ବା ଅସଙ୍ଗତ ନୁହେ । କିନ୍ତୁ ସଂସାର ସୁଖରେ ପଡ଼ି ଭଗବାନଙ୍କୁ ଭୁଲିଗଲେ ମଙ୍ଗଳ ହେବ ନାହିଁ । ଏହାହିଁ ଭକ୍ତକବି ଅନୁଭବ କରି ପ୍ରକାଶ କରିଅଛନ୍ତି ।

ଜଗତରେ ଯେତେ ମହାକବି ଜନ୍ମ ହୋଇଅଛନ୍ତି ସେ ସମସ୍ତେ ଜଣେ ଜଣେ ପ୍ରବୀଣ ଦାର୍ଶନିକ । ସଂସାରର ସୁଖ ଦୁଃଖର ଚିତ୍ର ନିଜ ନିଜର କାବ୍ୟରେ ଅଙ୍କନ କରି ସେମାନେ ପାଠକମାନଙ୍କୁ ଆଦର୍ଶ ଜୀବନର ମାର୍ଗ ପ୍ରଦର୍ଶନ କରିଛନ୍ତି । ଯେଉଁ ସାହିତ୍ୟ ପାଠକଲେ ଚିତ୍ତ ପ୍ରସନ୍ନ ହୁଏ ନାହିଁ, ଆନନ୍ଦ ମିଳେ ନାହିଁ, ଉଚ୍ଚ ଆଦର୍ଶରେ ପ୍ରାଣ ଉଦ୍‌ବୁଦ୍ଧ ହୁଏନାହିଁ, ମାନବର ପ୍ରବୃତ୍ତିମାନଙ୍କର ଯଥାର୍ଥ ସ୍ୱରୂପ ପ୍ରକାଶ ହୁଏ ନାହିଁ ଓ

ସେହି କାବ୍ୟ ଉଚ୍ଚକୋଟୀର ନୁହେଁ । କାବ୍ୟର ଉକ୍ତ ଚିନ୍ତାଗୁଡ଼ିକୁ ଆଲୋଚନା କଲେ କବିଙ୍କ ଗଭୀର ଅନ୍ତରର ଅବଧାରଣ କରିହୋଇ ପାରିବ ! ଭକ୍ତଚରଣ ପ୍ରଥମ ଛାନ୍ଦରେ ଯାହା ଲେଖିଛନ୍ତି, ତହିଁରେ ସଂସାର ସମ୍ଭୋଗରୁ ଲୋକମାନଙ୍କୁ ନିବର୍ତ୍ତାଇବା ତାଙ୍କର ଲକ୍ଷ୍ୟ ଥିଲା ପରି ଜଣାଯାଉ ନାହିଁ । ତାଙ୍କର ଭାଷାରେ—

ଆଉ ସମ୍ପଦେ ନାହିଁ ପ୍ରୟୋଜନ;
ଭକ୍ତି ବଳେ ମୋ ଦରିଦ୍ର ଜୀବନ ।

ଏଥିରୁ ପ୍ରକାଶ ପାଏ "ଆଉ ସମ୍ପଦେ" ବା ଅନ୍ୟ ସମ୍ପଦରେ ତାଙ୍କର ପ୍ରୟୋଜନ ନାହିଁ । କୃଷ୍ଣହିଁ ତାଙ୍କର ପରମ ସମ୍ପଦ । ତହିଁରୁ ପୁଣି ପ୍ରକାଶ ପାଏ, ଅଉ (ପୁଣି ବା ଏଣିକି] ସାଂସାରିକ ସମ୍ପଦରେ ତାଙ୍କର ପ୍ରୟୋଜନ ନାହିଁ । ସୁତରାଂ ମହାକବି କାଳିଦାସଙ୍କ ଭାଷାରେ "ଯୌବନେ ବିଷୟୈ-ଷିଣାମ୍" [ବା ଯୌବନାବସ୍ଥାରେ ବିଷୟ ସମ୍ଭୋଗ]ର ସେ ବିରୋଧୀ ନୁହନ୍ତି । କିନ୍ତୁ ପରେ ପରେ ଷଡ଼ରିପୁ ଦମନ କରି ଭଗବାନଙ୍କ ପାଖରେ ମନ ରଖି ଜୀବନ ଯାପନ କରିବାକୁ ହେବ ।

ସଂକ୍ଷେପରେ କହିବାକୁ ଗଲେ ଭକ୍ତଚରଣ ଥିଲେ ଲୀଳାମୟ ଭଗବାନଙ୍କର ପରମ ଉପାସକ । ଭକ୍ତି ତାଙ୍କର ପ୍ରାଣ । ଲୋକଙ୍କର ସାଂସାରିକ ମୋହ ତାଙ୍କର ହୃଦୟରେ ଦୁଃଖ ଜନ୍ମାଉଥିଲା ।

---

# ଧର୍ମମତ

ଉତ୍କଳରେ ବିଭିନ୍ନ ଧାର୍ମିକ ମତବାଦର ପ୍ରଚାର-ପ୍ରଚେଷ୍ଟାରୁ ସାହିତ୍ୟର ଉତ୍ତରୋତ୍ତର ବିକାଶ ସଂଘଟିତ ହୋଇଅଛି । ସାରଳା ଦାସଙ୍କ ସମୟରୁ ଯଦିଓ ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତିର ସୂଚନା ମିଳୁଅଛି, ତଥାପି ଚୈତନ୍ୟଙ୍କର ଉତ୍କଳ ଆଗମନ ସମୟରୁହିଁ ସାହିତ୍ୟର ବିକାଶ ସ୍ପଷ୍ଟତର ଓ ମହତ୍ତର ହୋଇପାରିଅଛି । ଏଠାରେ ସ୍ମରଣୀୟ ଯେ ୧୫୧୦ ଖ୍ରୀଷ୍ଟାବ୍ଦରେ ବଙ୍ଗବାସୀ ଓଡ଼ିଆ-ପୂଜ୍ୟ ଚୈତନ୍ୟ ଦେବ ଉତ୍କଳରେ ପଦାର୍ପଣ କରିଥିଲେ । ତାଙ୍କର ଅବସ୍ଥାନ ମଧ୍ୟରେ ଯେଉଁ ପାଞ୍ଚଜଣ ବିଶିଷ୍ଟ ଭକ୍ତ ଓ ବାଣୀସାଧକ ଖ୍ୟାତି ଲାଭ କରିଥିଲେ ସେମାନେ ଓଡ଼ିଆ ସାହିତ୍ୟରେ ଓ ଧର୍ମର ଇତିହାସରେ ପଞ୍ଚସଖା ବା ପଞ୍ଚଶାଖା ରୂପେ ପରିଚିତ । ସେମାନେ ହେଉଛନ୍ତି ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଦାସ ଓ ଅନନ୍ତ ଦାସ । ଏହି ପଞ୍ଚ ସଖାଙ୍କ ମଧ୍ୟରୁ ପ୍ରଥମ ତିନିଜଣ ଯଥାକ୍ରମରେ ଓଡ଼ିଆ ରାମାୟଣ ( ଜଗମୋହନ ବା ଦାଣ୍ଡି ରାମାୟଣ ) ଓଡ଼ିଆ ଭାଗବତ ଓ ଓଡ଼ିଆ ହରିବଂଶ ଲେଖକ ରୂପେ ପୁର-ପଲ୍ଲୀରେ ସର୍ବଜନ ପରିଚିତ । ଏମାନେ ଗୋଟିଏ ଧର୍ମଶାଖାର ଅନ୍ତର୍ଭୁକ୍ତ ନହେଲେ ମଧ୍ୟ ଏମାନଙ୍କ ମଧ୍ୟରେ ଗଭୀର ସୌହାର୍ଦ୍ଦ୍ୟ, ଶ୍ରୀଚୈତନ୍ୟ ପ୍ରେମ, ଜଗନ୍ନାଥ ଭକ୍ତି, ଯୋଗ ଓ ଜ୍ଞାନ ପ୍ରତି ଆସ୍ଥା ଯେ ଥିଲା, ଏହା ସେମାନଙ୍କ ଲିଖିତ ଗ୍ରନ୍ଥ ମାନଙ୍କ ମଧ୍ୟରୁ ସ୍ପଷ୍ଟ ପ୍ରତିପନ୍ନ ହୁଏ ।

ଷୋଡ଼ଶ ଶତାବ୍ଦୀର ପ୍ରଥମ ପାଦରୁ ଭକ୍ତଚରଣଙ୍କ ଆବିର୍ଭାବ ପର୍ଯ୍ୟନ୍ତ ବା ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟ ପାଦ ପର୍ଯ୍ୟନ୍ତ ବହୁ ସଂଖ୍ୟକ କବି ନିଜ ନିଜର

ବଳିଷ୍ଠ ଲେଖନୀ ଚାଳନା କରି ଉତ୍କଳ ଭାରତୀଙ୍କ ଭଣ୍ଡାରକୁ ସମୃଦ୍ଧ କରି ଯାଇ ଅଛନ୍ତି । ପ୍ରାଚୀନ ଓ ମଧ୍ୟ-ଯୁଗର ଓଡ଼ିଆ ସାହିତ୍ୟ ବିଷ୍ଣୁ ଉପାସନାର ସୁଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠିତ । ରାମଚନ୍ଦ୍ର ପଟ୍ଟନାୟକ କିମ୍ବା ଧନଞ୍ଜୟ ଓ ଉପେନ୍ଦ୍ର ଭଞ୍ଜଙ୍କ ପରି ଅଳ୍ପ କେତେକ ଲେଖକଙ୍କୁ ଛାଡ଼ି ଦେଲେ ଅନ୍ୟ ସମସ୍ତ କବିଙ୍କ ଲେଖନୀ ଯେ ଧର୍ମତତ୍ତ୍ୱମୂଳକ କିମ୍ବା ପୁରାଣକେନ୍ଦ୍ରିକ ଥିଲା କହିବା ବାହୁଲ୍ୟ ମାତ୍ର । ବୈଷ୍ଣବ କବିମାନଙ୍କୁ ଉତ୍କଳରେ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । କେତେକ କବି କୃଷ୍ଣ ଉପାସକ ଓ ଅନ୍ୟ କେତେକ କବି ରାମ ଉପାସକ ଥିବା ସେମାନଙ୍କ କାବ୍ୟରୁ ଜଣାଯାଏ । ପୁଣି କୃଷ୍ଣ ଉପାସକ କବିମାନଙ୍କୁ ଏ ଭାଗରେ ବିଭକ୍ତ କରାଯାଇ ପାରେ—କେତେକ କବି ନିଜ ନିଜର କାବ୍ୟରେ କୃଷ୍ଣ ଚରିତ ବର୍ଣ୍ଣନା କରିଥିଲେ ହେଁ ଉତ୍କଳର ବୈଶିଷ୍ଟ୍ୟ ରକ୍ଷା କରି ସେମାନେ କାବ୍ୟ ମଧ୍ୟରେ ନିଜ ନିଜର ସ୍ୱତନ୍ତ୍ରତା ପ୍ରଦର୍ଶନ କରିଛନ୍ତି । ସେମାନଙ୍କୁ ଓଡ଼ିଶୀ ବୈଷ୍ଣବ କବି ବୋଲି କୁହାଯାଏ । ଅନ୍ୟ କେତେକ କବି ସେହି କୃଷ୍ଣଚରିତ ଅବଲମ୍ବନରେ କାବ୍ୟ ପ୍ରଣୟନ କରିଥିଲେ ହେଁ ଓଡ଼ିଆ କବିଙ୍କ ପରି ନୀଳାଚଳବିହାରୀ ଜଗନ୍ନାଥଙ୍କୁ ଶ୍ରେଷ୍ଠ ଦେବତା ରୂପେ ପ୍ରତିପାଦନ କରି ନାହାନ୍ତି । ସେମାନଙ୍କୁ ଗୌଡ଼ୀୟ ବୈଷ୍ଣବ କୁହାଯାଏ ।

ଆହୁରି ମଧ୍ୟ କେତେ ଜଣ କବି ମୁକ୍ତି ଲାଭର ଉପାୟ ରୂପେ ଯୋଗ ଓ ଜ୍ଞାନକୁ ବିଶିଷ୍ଟ ସ୍ଥାନ ଦେଇଛନ୍ତି । କିନ୍ତୁ ଅନ୍ୟମାନେ କେବଳ ମାତ୍ର ପ୍ରେମଭକ୍ତିହିଁ ମୁକ୍ତିର ମାର୍ଗ ରୂପେ ବର୍ଣ୍ଣନା କରିଛନ୍ତି—ଖାଲି ସେତିକି ନୁହେଁ, ଭକ୍ତିର ତୁଳନାରେ ମୁକ୍ତିକୁ ନିତାନ୍ତ ହେୟ ରୂପେ ପ୍ରତିପାଦନ କରିଛନ୍ତି ।

ଭକ୍ତଚରଣଙ୍କ ଧାର୍ମିକ ମତବାଦ ବୁଝାଇବାକୁ ହେଲେ ଉପରେ ଉଲ୍ଲିଖିତ ହୋଇଥିବା 'ଓଡ଼ିଶୀ ବୈଷ୍ଣବ' ଓ ଗୌଡ଼ୀୟ ବୈଷ୍ଣବ ଧର୍ମ ମଧ୍ୟରେ କି ପାର୍ଥକ୍ୟ ଦେଖାଯାଏ, ତାହା ସଂକ୍ଷେପରେ ବ୍ୟକ୍ତ କରିବାକୁ ହେବ । ଏ ଦୁଇଟି ମତବାଦ ମଧ୍ୟରେ ଯଦ୍ୟପି ବହୁତ ପ୍ରଭେଦ ଅଛି, ତଥାପି ତଳ ଲିଖିତ କେତୋଟି କଥାରୁ ସେ ଦୁହିଙ୍କ ପାର୍ଥକ୍ୟର ସ୍ୱରୂପ ସହଜରେ ଜଣାଯିବ ।

(କ) ଓଡ଼ିଶୀ ବୈଷ୍ଣବମାନେ ଶ୍ରୀକ୍ଷେତ୍ରବାସୀ ଜଗନ୍ନାଥଙ୍କୁ ଅଂଶୀ, ଅବତାରୀ ଓ ପୁରାଣର ଶ୍ରୀକୃଷ୍ଣଙ୍କୁ ଜଗନ୍ନାଥଙ୍କର ଅଂଶ ରୂପେ ପ୍ରତିପାଦନ କରନ୍ତି । କିନ୍ତୁ ଗୌଡ଼ୀୟମାନଙ୍କ ମତରେ ନନ୍ଦନନ୍ଦନ ଶ୍ରୀକୃଷ୍ଣ ଅବତାରୀ ଅଟନ୍ତି ।

(ଖ) ଓଡ଼ିଶୀ ବୈଷ୍ଣବମାନଙ୍କ ମତରେ ଶ୍ରୀକ୍ଷେତ୍ର କଳ୍ପ କ୍ଷେତ୍ର ଜଗତରେ ପରମ ପବିତ୍ର ଓ ଅନ୍ୟ ସମସ୍ତ କ୍ଷେତ୍ର ଠାରୁ ଶ୍ରେଷ୍ଠ । କିନ୍ତୁ ଗୌଡ଼ୀୟମାନେ ବୃନ୍ଦାବନକୁ ସର୍ବଶ୍ରେଷ୍ଠ କ୍ଷେତ୍ର ମନେ କରନ୍ତି ।

(ଗ) ଓଡ଼ିଶୀ ବୈଷ୍ଣବମାନେ କଳିଯୁଗର ଶ୍ରେଷ୍ଠ ମନ୍ତ୍ର ରୂପେ 'ହରେରାମ' ମନ୍ତ୍ରକୁ ଗ୍ରହଣ କରନ୍ତି । କିନ୍ତୁ ଗୌଡ଼ୀୟମାନେ ହରେକୃଷ୍ଣ ମନ୍ତ୍ର ସର୍ବଶ୍ରେଷ୍ଠ ମନେ କରନ୍ତି ।

(ଘ) ଓଡ଼ିଶୀ ବୈଷ୍ଣବମାନେ ଭକ୍ତିକୁ ମୁକ୍ତି ସାଧନ ରୂପେ ଗ୍ରହଣ କଲେ ମଧ୍ୟ ସେଥିପାଇଁ ଜ୍ଞାନ ଓ ଯୋଗର ଆବଶ୍ୟକତା ଅଛି ବୋଲି ପ୍ରଚାର କରନ୍ତି । କିନ୍ତୁ ଗୌଡ଼ୀୟମାନେ କେବଳ ମାତ୍ର କୃଷ୍ଣ ଭକ୍ତିକୁ ମୁକ୍ତି ସାଧନା ବା ପରମ ପୁରୁଷାର୍ଥ ପ୍ରାପ୍ତିର ଉପାୟ ରୂପେ ପ୍ରତିପାଦନ କରନ୍ତି ।

(ଙ) ସଂସ୍କୃତ ଭାଗବତରେ ଶ୍ରୀକୃଷ୍ଣଙ୍କ ପ୍ରିୟତମା "ରାଧା"ଙ୍କର ନାମ ପର୍ଯ୍ୟନ୍ତ ନାହିଁ । ଯେଉଁଠାରେ ତାଙ୍କ ପ୍ରିୟତମା, କୌଣସି ଜଣେ ଗୋପୀଙ୍କର ବର୍ଣ୍ଣନା କରାଯାଇଛି, ସେଠାରେ ସେହି ରାଧା ବୋଲି ଗୌଡ଼ୀୟ ମତାବଲମ୍ବୀ ପଣ୍ଡିତମାନେ ଅର୍ଥ କରନ୍ତି । ଜଗନ୍ନାଥ ଦାସ ନିଜର ବିଖ୍ୟାତ ଓଡ଼ିଆ ଭାଗବତରେ ସେହି ନାମ-ନିର୍ଦ୍ଦିଷ୍ଟ-ହୋଇ ନ ଥିବା କୃଷ୍ଣ-ପ୍ରିୟତମାଙ୍କୁ ବୃନ୍ଦାବତୀ ବୋଲି ବର୍ଣ୍ଣନା କରିଛନ୍ତି ।

ଷୋଡ଼ଶ ଶତାବ୍ଦୀର ଜଗନ୍ନାଥ ଦାସ ଓ ଅଷ୍ଟାଦଶ ଶତାବ୍ଦୀର ଭକ୍ତ-ଚରଣଙ୍କ ମଧ୍ୟରେ ଆମେ ୫ । ୬ ଜଣ ବିଶିଷ୍ଟ କବିଙ୍କୁ ଦେଖିବାକୁ ପାଉ । ସେମାନଙ୍କର ମଧ୍ୟରେ ରସକଲ୍ଲୋଳ ଲେଖକ ଦୀନକୃଷ୍ଣ ଦାସ, କବି ସମ୍ରାଟ

ଉପେନ୍ଦ୍ର ଭଞ୍ଜ ତଥା ଭୂପତି ପଣ୍ଡିତ ପ୍ରଧାନ । ଜଗନ୍ନାଥଙ୍କ ଭାଗବତ, ରଚିତ ହେବା ପରେ ପରେ ବିଦ୍ୟୁତ ବେଗରେ ସର୍ବତ୍ର ପ୍ରଚଳିତ ହେଲା । ତାଙ୍କ ସଙ୍ଗେ ସଙ୍ଗେ ପଞ୍ଚ ସଖାଙ୍କ ଲିଖିତ ଗ୍ରନ୍ଥମାନ ମଧ୍ୟ ପରମ ଆଦର ସହକାରେ ଲେଖକ ମାନେ ପାଠକଲେ । ସୁତରାଂ ଆନୁମାନିକ ୧୫୫୦ ଠାରୁ ୧୬୫୦ ମଧ୍ୟରେ ଭାଗବତ ତଥା ପଞ୍ଚସଖାଙ୍କ ସାହିତ୍ୟରେ ଉତ୍କଳ ଦେଶ ଯେପରି ପ୍ଳାବିତ ହୋଇଥିଲା ଯୋଗ ଓ ଜ୍ଞାନମୂଳକ ଉତ୍କଳୀୟ ଭକ୍ତିଧାରା ସେହିପରି ଲୋକଙ୍କ ହୃଦୟରେ ବଦ୍ଧମୂଳ ହେଲା । ହେଲେହେଁ ଚୈତନ୍ୟଙ୍କ ସମୟରୁ ବଙ୍ଗଳା ସଙ୍ଗେ ଉତ୍କଳର ସମ୍ପର୍କ ଅଧିକରୁ ଅଧିକତର ହେବାରୁ ୧୬୫୦ ବେଳକୁ ଧୀରେ ଧୀରେ ଗୌଡ଼ୀୟ ଭକ୍ତିତତ୍ତ୍ୱ ପ୍ରଚାର ପାଇଁ ନିଜର ମାର୍ଗ ବାଛି ନେଇଥିଲା । ଦୀନକୃଷ୍ଣଙ୍କ ରସକଲ୍ଲୋଳ ପାଠ କଲେ ଜଣାଯାଏ କବି ଓଡ଼ିଶୀ ବୈଷ୍ଣବ ରୂପେ କାବ୍ୟର ମୂଳରୁ ନିଜକୁ ପରିଚିତ କରାଇ ନ ଥିଲେ ହେଁ ମଝିରେ ବିଶେଷତଃ ଶେଷ ଅଂଶକୁ ଗୌଡ଼ୀୟ ମତବାଦର ଆଶ୍ରୟ ଗ୍ରହଣ କରିଥିବା ପରି ଜଣାଯାଏ । ଭକ୍ତଚରଣ ଦୀନକୃଷ୍ଣଙ୍କର ପ୍ରାୟ ଶହେ ବର୍ଷ ପରେ ମଥୁରାମଙ୍ଗଳ ରଚନା କରିଥିଲେ । ସେତେବେଳକୁ କବି ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ଗୁରୁ ଉପେନ୍ଦ୍ର ଭଞ୍ଜଙ୍କ ଶୈଳୀ ଅବଲମ୍ବନ କରି ଗୌଡ଼ୀୟ ମତବାଦ ଉତ୍କଳରେ ସ୍ପଷ୍ଟ ରୂପେ ପ୍ରଚାର କରିବାକୁ ଉଦ୍ୟତ ହେଲେଣି । ଭକ୍ତଚରଣ ଏ ଦୁଇ ଧାର୍ମିକ ମତବାଦର ସମ୍ପୂର୍ଣ୍ଣ ଚିତ୍ର ମଥୁରାମଙ୍ଗଳର ୨୬ଶ ଓ ୨୭ଶ ଛାନ୍ଦରେ ଅଙ୍କନ କରି ନିଜକୁ ପରିଚିତ କରାଇଛନ୍ତି । ଉକ୍ତ ଦୁଇ ଛାନ୍ଦରେ କୃଷ୍ଣ-ଦୂତ ଉଦ୍ଧବ, ଯଶୋଦା ଓ ଗୋପବାଳାମାନଙ୍କୁ ଜ୍ଞାନମାର୍ଗର ପଥିକ ରୂପେ ବ୍ରହ୍ମତତ୍ତ୍ୱ ବୁଝାଇଛନ୍ତି ।

ଦୀନକୃଷ୍ଣ ଦାସଙ୍କ ଦ୍ୱାରା ଭକ୍ତଚରଣ ଅନେକ ସ୍ଥଳରେ ପ୍ରଭାବିତ ହୋଇଥିଲେ ମଧ୍ୟ ଧର୍ମ ବିଷୟକ ତଥ୍ୟଗୁଡ଼ିକର ଅବତାରଣାରେ ପୂର୍ଣ୍ଣ ସ୍ୱାଧୀନତା ରକ୍ଷା କରିଛନ୍ତି । ରସକଲ୍ଲୋଳରେ ବର୍ଣ୍ଣିତ ହୋଇଅଛି ଯେ କୃଷ୍ଣ ଦୂତ ଉଦ୍ଧବ ଗୋପୀ ଚିତ୍ତଙ୍କୁ ସାନ୍ତ୍ୱନା ଦେବାକୁ ମଥୁରାରୁ ଗୋପ ପୁରକୁ ଯାଇବାକରି ଗୋପୀମାନଙ୍କର ଭକ୍ତିଭାବରେ ମୁଗ୍ଧ ହୋଇ ଯାଇଥିଲେ ।

କିନ୍ତୁ ଭକ୍ତଚରଣ ଗୋଟିଏ ତର୍କ ସଭାର ଆଲୋଚନା ଭଙ୍ଗୀରେ ନିଜର ମତ ଉପସ୍ଥାପନ କରିଛନ୍ତି । କବିଙ୍କ ସମୟରେ ବହୁ ଉତ୍କଳୀୟ ବୈଷ୍ଣବ ଭକ୍ତ ହେଲେ ଜ୍ଞାନର ଉତ୍କର୍ଷ ସ୍ୱୀକାର କରୁଥିବାରୁ ସେ ଜ୍ଞାନପନ୍ଥାର ଖଣ୍ଡନ କରିବାକୁ ଚେଷ୍ଟା କରିଛନ୍ତି । ଉଦ୍ଧବଙ୍କ ମୁଖରେ ପ୍ରଥମେ ବିପକ୍ଷବାଦୀଙ୍କର ମତ ଉପସ୍ଥାପନ କରି ଯଶୋଦା ଓ ଗୋପୀମାନଙ୍କ ମୁଖରେ କବି ନିଜର ମତ ପ୍ରକାଶ ଓ ପ୍ରତିଷ୍ଠା କରିଛନ୍ତି । ଯଶୋଦା ଯେତେବେଳେ 'ମୋ ପୁଅ' 'ମୋ ପୁଅ' କହି ବ୍ୟାକୁଳ ହେଲେ, ଉଦ୍ଧବ ତାଙ୍କୁ ଜ୍ଞାନ-ବାଦ ଦୃଷ୍ଟିରୁ ବୁଝାଇ କହିଥିଲେ—

ଶୁଣି ଏ ବଚନ ଉଦ୍ଧବ ବୋଲନ୍ତି ଶୁଣ ଗୋ ଜନନୀ
ବିଅର୍ଥେ କାହିଁ ମୋହର ମୋହର ବୋଲୁଛ ନ ଜାଣି ।

× × ×

ଏଣୁ କରି ବ୍ରହ୍ମଜ୍ଞାନୀ ମାନେ ଠୂଳ ବୋଲିଣ ଜାଣନ୍ତି ।

ଉଦ୍ଧବ ଶ୍ରୀକୃଷ୍ଣଙ୍କୁ ବ୍ରହ୍ମ ବୋଲି ପ୍ରତିପାଦନ କରିବାରୁ ଭକ୍ତିମୟୀ ଯଶୋଦା କ୍ରୋଧାନ୍ୱିତା ହୋଇ କହିଲେ —

ଛଡ଼ ସେ ବିଷୟ ନକର ସଂଶୟ ଗୋବିନ୍ଦ ଉପର
ବ୍ରହ୍ମ ବ୍ରହ୍ମ ବୋଲି କେତେ ବୋଲ ତାକୁ ସେ ମୋର କୁମର ।

× × ×

ଯେବେ ସେ କଥା କହିବାକୁ ବିଗୁର ଗୋପରେ ନ ଥାଅ
ଯହିଁ ଥିବେ ବ୍ରହ୍ମଜ୍ଞାନ ଥିଲା ଲୋକ ତାହାକୁ ବୁଝାଅ ।

× × ×

ସାକ୍ଷାତେ ଜଠରୁ ଜନମ କରିଛି ଏ ଗଳ୍ପ ମିଛକି
ବ୍ରହ୍ମ ବୋଲି କେତେ ଉଚ୍ଚ କରୁଅଛ ମୋହର ବତ୍ସକୁ ।

(୨୫ଶ ଛନ୍ଦ)

କେବଳ ସେତିକି ନୁହେଁ କବି ୨୭ଶ ଛାନ୍ଦର ପ୍ରଥମ ଗୃହଗୋଟି ପଦରେ କୃଷ୍ଣଙ୍କୁ ସର୍ବବ୍ୟାପକ ରୂପେ ବର୍ଣ୍ଣନା କରି ସେ ଜ୍ଞାନ ଦ୍ୱାରା କିପରି ଉପଲବ୍ଧ ତାହା କହିଛନ୍ତି ଏବଂ ଉପଦେଶ ଦେଇଛନ୍ତି—

ସେ ବ୍ରହ୍ମଙ୍କୁ କର ଧ୍ୟାନ          କାମନା ହେବ ଦହନ
ହୃଦରେ ରଖିବ ନିରଞ୍ଜନ ।

କିନ୍ତୁ ତାହା ପରେ ୫ମ ପଦ ଠାରୁ ୧୭ଶ ପଦ ମଧ୍ୟରେ ଭକ୍ତ କବି ଭକ୍ତଚରଣ ଗୋପୀମାନଙ୍କ ମୁଖରେ ନିଜର ମତ ପ୍ରକାଶ କରି ଜ୍ଞାନ ତୁଳନାରେ ଭକ୍ତି କିପରି ଉତ୍କୃଷ୍ଟ, ତାହା ଦର୍ଶାଇଛନ୍ତି । ସେମାନେ କହିଛନ୍ତି—

ଏ ଯେଉଁ ଜ୍ଞାନକୁ ବୁଝାଇଲ,
କ୍ଷୀର ଭାଣ୍ଡେ ଦଧି ଦେଲେ          ନାଶ ଯାଏ ସ୍ନେହ ଭଲେ
ଜ୍ଞାନ କଥା କିପାଇଁ କହିଲ

× ×

ଯେଉଁ ଜନ ସୁଧା ଖାଇ ଥାଇ
ସେ କିକ ମହୁଲ ପାଶେ ଯାଇ

× ×

କେବଳ ସେ [ଭକ୍ତି] ରସର ଭଣ୍ଡାର
ବ୍ରହ୍ମଜ୍ଞାନ ତାହାଙ୍କ କିଙ୍କର

× ×

ତଥାପି ମଧୁର ରସେ          ଜ୍ଞାନ ଯେବେ ଅଳ୍ପ ମିଶେ
ତାକୁ ସେ କରଇ ବେଗେ ନାଶ

ପତିବ୍ରତା ନାରୀ ସେହ୍ନେ ପର ପୁରୁଷର ସଙ୍ଗେ
ସଂଯୋଗ ହୋଇଲେ ହୋଏ ଭ୍ରଂଶ।

× × ×

ବ୍ରହ୍ମଜ୍ଞାନ ନ ଜାଣନ୍ତି ତାହା
ଶୁଷ୍କ ତରୁ ପ୍ରାୟେ ତାଙ୍କ ହୁଅ।

ଭକ୍ତଚରଣ ଉତ୍କଳୀୟ ବୈଷ୍ଣବମାନଙ୍କ ପରି ଜ୍ଞାନକୁ ନିଜର ସାଧନ ମଧ୍ୟରେ ସ୍ଥାନ ଦେଇ ନାହାନ୍ତି। ବରଂ କେଉଁଠାରେ କରକା, କେଉଁଠାରେ ଅସତୀ ନାରୀ ସଙ୍ଗେ ତୁଳନା କରି ଭକ୍ତି ତୁଳନାରେ ତାହାର କ୍ଷୁଦ୍ରତାହିଁ ବର୍ଣ୍ଣନା କରିଛନ୍ତି। ଏଥିରୁ କେତେକ ପରିମାଣରେ ସେ ଗୌଡ଼ୀୟ ବୈଷ୍ଣବ ଧର୍ମର ଉପାସକ ଥିବା ଅନୁମିତ ହୁଏ।

ଏ ତ ଗଲା ଜ୍ଞାନ ଓ ଭକ୍ତିର ସମ୍ପର୍କ ଦୃଷ୍ଟିରୁ କବିଙ୍କ ଧର୍ମମତ ନିରୂପଣ। ଏଥି ପୂର୍ବେ ଓଡ଼ିଶୀ ବୈଷ୍ଣବ ଧର୍ମର ଯେଉଁ ବୈଶେଷ୍ଟ୍ୟ ଗୁଡ଼ିକ ଉଲ୍ଲେଖ କରାଯାଇଛି ସେଗୁଡ଼ିକୁ ମୂଳ କରି ବିଚାର କଲେ କବି ଗୌଡ଼ୀୟ ମତବାଦୀ ଥିବା ଜଣାଯିବ। ପଞ୍ଚସଖା କମ୍ବା ଦୀନକୃଷ୍ଣଙ୍କ ପରି ଭକ୍ତଚରଣ ନୀଳାଚଳର ମାହାତ୍ମ୍ୟ କମ୍ବା ନୀଳାଚଳନାଥଙ୍କର ଗୌରବ ବର୍ଣ୍ଣନ କରି ନାହାନ୍ତି। ସେ ଗୋକୁଳ-ସୁନ୍ଦର, କଂସାରି, ଯାଦବ-ବରଜ-ଚନ୍ଦ୍ରମାଙ୍କର ବନ୍ଦନା କାବ୍ୟ ମୂଳରେ କରିଛନ୍ତି। ପୁଣି ଲେଖିଛନ୍ତି—

କୃଷ୍ଣ ଭଜିଲେ ତରନ୍ତି ଜାଣିଲି।

ଓଡ଼ିଶୀ କବିଙ୍କ ପରି ଜଗନ୍ନାଥଙ୍କ ଠାରେ କବି କାବ୍ୟ-ରଚନା-ଶକ୍ତି ପ୍ରାର୍ଥନା କରି ନାହାନ୍ତି। ବରଂ ଲେଖିଛନ୍ତି—

ଗୀତ କରି ରଚିବି ହରି ଲୀଳା
ଦୟା କର ହେ ସ୍ୱାମୀ ନନ୍ଦବଳା

(୧ମ ଛାନ୍ଦ)

ମୋର ହୃଦରେ ବସି ଗଅ ଭକ୍ତ
ଭକ୍ତଚରଣ ଏତକ ମାଗଇ ।

କଳି ସନ୍ତରଣୋପନିଷଦ୍ ଅନୁସାୟୀ ଉତ୍କଳୀୟମାନେ ହରେରାମ ମନ୍ତ୍ରକୁ ଗ୍ରହଣ କରନ୍ତି । କିନ୍ତୁ ଗୌଡ଼ୀୟ ବୈଷ୍ଣବ ମାନଙ୍କ ତୁଲ୍ୟ ଭକ୍ତଚରଣ ହରେକୃଷ୍ଣ ମନ୍ତ୍ର ପ୍ରଚାର କରିଅଛନ୍ତି । ସେ ଶେଷ ଛାନ୍ଦରେ ଲେଖିଛନ୍ତି—

"ଏଣୁ ଭଜ ଗୋବିନ୍ଦ ଚରଣ
ନ ପାଇବ ଯମର କଷଣ
ସର୍ବ ଜୀବେ ଦୟା ଘନ୍ଧ
ମୁଖେ ହରେକୃଷ୍ଣ ଜପ ।"

କୌଣସି ସ୍ଥଳରେ କବି ଓଡ଼ିଶୀ ବୈଷ୍ଣବଙ୍କ ତୁଲ୍ୟ ମୁକ୍ତି ସେବାର ନିତ୍ୟତା ପ୍ରତିପାଦନ କରି ନାହାନ୍ତି । ରାଧାଙ୍କର ବର୍ଣ୍ଣନା ଏଥିରେ ପରିଦୃଷ୍ଟ ହେଉଥିଲେ ମଧ୍ୟ 'ବୃନ୍ଦାବତୀ' ପୂର୍ଣ୍ଣତଃ ପରିତ୍ୟକ୍ତା ହୋଇ ନାହାନ୍ତି । କବି ଜଗନ୍ନାଥଙ୍କ ଭାଗବତରେ ପ୍ରବୀଣତା ଅର୍ଜ୍ଜନ କରିଥିଲେ । ତାହାର ପ୍ରଭାବରେ ବୃନ୍ଦାବତୀର ବର୍ଣ୍ଣନା କରିଛନ୍ତି ।

ମନବୋଧ ଚଉତିଶାରେ ବୈରାଗ୍ୟ ବର୍ଣ୍ଣନା ଦେଖି କେହି କେହି କବିଙ୍କୁ ଯୋଗମାର୍ଗର ଏକାନ୍ତ ଉପାସକ ରୂପେ ଗ୍ରହଣ କରିବା ଅସମ୍ଭବ ନୁହେଁ । ସୁତରାଂ ମନବୋଧ ଚଉତିଶା ପାଠ ପରେ ମଥୁରାମଙ୍ଗଳ ପରିଶୀଳନ କଲେ କବିଙ୍କୁ ଯୋଗ ପକ୍ଷପାତୀ ଓଡ଼ିଶୀ ବୈଷ୍ଣବ ରୂପେ ଗ୍ରହଣ କରିବାରେ ହୁଏ ତ କୌଣସି ଅସଙ୍ଗତ ପ୍ରତୀତ ହେବ ନାହିଁ । କିନ୍ତୁ ମଥୁରାମଙ୍ଗଳର ସତେଇଶ ଛାନ୍ଦ ପାଠ କଲା ପରେ ତହିଁରେ ଭକ୍ତିର ଅତ୍ୟନ୍ତ ପ୍ରାଧାନ୍ୟ ଦେଖି କେହି କେହି ହୁଏ ତ ମନବୋଧ ଚଉତିଶା ଲେଖକଙ୍କର ଧାର୍ମିକ ମତବାଦରେ ଘୋର ସନ୍ଦେହ ପୋଷଣ କରିବା ଅସମ୍ଭବ ହେବନାହିଁ । ମଥୁରାମଙ୍ଗଳ ମୁଖବନ୍ଧରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଲେଖିଛନ୍ତି—ଭକ୍ତଚରଣ ମଥୁରାମଙ୍ଗଳରେ ରାଧା ଓ ବୃନ୍ଦାବତୀଙ୍କୁ ସ୍ୱତନ୍ତ୍ର ରୂପେ ଗ୍ରହଣ କରିଅଛନ୍ତି ।

× × ଭକ୍ତଚରଣ ଗୌଡ଼ୀୟ ଗୋସ୍ୱାମୀମାନଙ୍କ ମତାବଲମ୍ବୀ ନଥିଲେ, ଏଥିରୁ ସ୍ପଷ୍ଟ ପରିଲକ୍ଷିତ ହୁଏ—"[ପୃ ୯ ୪/ ] କିନ୍ତୁ ଏଥି ପୂର୍ବେ ଏ ପ୍ରବନ୍ଧରେ ଯେଉଁ କେତୋଟି ବିଷୟର ଅବତାରଣା ଓ ଆଲୋଚନା କରାଯାଇଛି ସେ ସମସ୍ତରୁ କବି ଉତ୍କଳୀୟ ନଥିବା ମଧ୍ୟ ସ୍ପଷ୍ଟ ପରିଲକ୍ଷିତ ହୁଏ ।

ଏଠାରେ ପୁଣି ଯୁକ୍ତି କରାଯାଇପାରେ, ଭକ୍ତଚରଣ ଗୌଡ଼ୀୟ ମତାବଲମ୍ବୀ ହୋଇଥିଲେ ବୈରାଗ୍ୟ ଉପରେ ଏତେ ଗୁରୁତ୍ୱ ଆରୋପ କରି ନଥାନ୍ତେ । ତେଣୁ ସେ ନିଶ୍ଚୟ ଉତ୍କଳୀୟ ବୈଷ୍ଣବ । କିନ୍ତୁ ଏହାର ଉତ୍ତରରେ କୁହା ଯାଇପାରେ ଯେ ବୈରାଗ୍ୟ ବର୍ଣ୍ଣନା ହେତୁ କବି ଗୌଡ଼ୀୟ ମତର ବିରୋଧୀ ହୋଇ ନପାରନ୍ତି । ଅଧ୍ୟାପକ ଅଭିରାମ ମହାନ୍ତି ମୁଖବନ୍ଧରେ ପୁଣି ଲେଖିଛନ୍ତି ( ପୃ ୩ ୪ )—"ଜ୍ଞାନ ଓ ବୈରାଗ୍ୟ ସାଧାରଣତଃ ଭକ୍ତିମାର୍ଗରେ ବର୍ଜନୀୟ ହେଲେହେଁ ଅବିରୋଧୀ ଜ୍ଞାନ ଓ ବୈରାଗ୍ୟ ଭକ୍ତିପ୍ରବେଶରେ ସହାୟ, ଏହା ଅବଶ୍ୟ ସ୍ୱୀକାର୍ଯ୍ୟ । ଯେ ଜ୍ଞାନ ଓ ବୈରାଗ୍ୟରେ ଚିତ୍ତର କଠିନତା ଜାତ ହୁଏ ତାହା ଭକ୍ତିମାର୍ଗରେ ବର୍ଜନୀୟ । × × 'କର୍ମ ବିକ୍ଷେପକଂ ତସ୍ୟା ବୈରାଗ୍ୟଂ ରସଶୋଷକମ୍,' କର୍ମ ଚିତ୍ତକୁ ବିକ୍ଷିପ୍ତ କରେ, ବୈରାଗ୍ୟ ଶୁଷ୍କ କରେ । × × ଶ୍ରଦ୍ଧାଯୁକ୍ତ ମୁନିମାନେ ଅନୁକୂଳ ଜ୍ଞାନ ଶ୍ରୁତିଗୃହୀତ ଭକ୍ତି ଦ୍ୱାରା ଏହି ତତ୍ତ୍ୱର ସାକ୍ଷାତକାର ଲାଭ କରନ୍ତି ।'

ଅଧ୍ୟାପକ ମହାନ୍ତି ସେ ସ୍ଥଳରେ ପାଦ ଟୀକାରେ ପୁଣି ଲେଖିଛନ୍ତି—'ଜ୍ଞାନ ଓ ବୈରାଗ୍ୟ ଜନ୍ମ ମୃତ୍ୟୁ ରୂପ ପାଶର ନାଶକ । ଭଗବଦ୍ ପ୍ରେମିକଙ୍କର ଉକ୍ତ ପାଶର ଆଶଙ୍କା ନଥିବାରୁ ଜ୍ଞାନ ଓ ବୈରାଗ୍ୟର ବିଶେଷ--ପ୍ରୟୋଜନ ଥାଏ ନାହିଁ । ତେବେ ସୁଦ୍ଧା ଭକ୍ତିର ଅଙ୍ଗୀଭୂତ ଜ୍ଞାନ ଓବୈରାଗ୍ୟ ବର୍ଜନୀୟ ନୁହେଁ ।"

ଅଧ୍ୟାପକ ମହାନ୍ତି ଯଦ୍ୟପି କବିଙ୍କୁ ଉତ୍କଳୀୟ ବୈଷ୍ଣବ ବୋଲି କହିଛନ୍ତି ତଥାପି ତାଙ୍କର ଉପରେ ଲିଖିତ ମନ୍ତବ୍ୟରୁ ଭକ୍ତଚରଣଙ୍କୁ ଓଡ଼ିଶୀ

କହିବାର କୌଣସି କାରଣ ନାହିଁ । ଭକ୍ତଚରଣ ନିଜର ବୈରାଗ୍ୟ ଓ ଯୋଗତତ୍ତ୍ୱକୁ ଭକ୍ତିର ଅବିରୋଧୀ ରୂପେ ଉପସ୍ଥାପନ କରିଅଛନ୍ତି । ତେଣୁ ଶେଷରେ ଭକ୍ତଚରଣଙ୍କୁ ଗୌଡ଼ୀୟ ବୈଷ୍ଣବ ରୂପେ ସିଦ୍ଧାନ୍ତ କରିବା ଯୁକ୍ତି-ଯୁକ୍ତ ହେବ । କବି ଦୀନକୃଷ୍ଣ ଉଭୟ ମତବାଦ ମଧ୍ୟରେ ସମନ୍ୱୟ ସ୍ଥାପନ କରିବାର ଯେଉଁ ପ୍ରଚେଷ୍ଟା କରିଥିଲେ ତାହା ଅନ୍ୟତ୍ର ଆଲୋଚନା କରା-ଯାଇଛି × । ଓଡ଼ିଆ କବି ଦେଶର ସାମ୍ପ୍ରତିକ ଜଳବାୟୁରୁ ନିଜକୁ ସମ୍ପୂର୍ଣ୍ଣ ରୂପେ ମୁକ୍ତ କରି ନପାରି ଓ ଅତି ଜନପ୍ରିୟ ଭାଗବତର ନିର୍ଦ୍ଦେଶକୁ ଲଙ୍ଘନ କରି ନ ପାରି ରାଧା ବଦଳରେ ବୃନ୍ଦାବତୀଙ୍କୁ ଗ୍ରହଣ କରିଛନ୍ତି । ଏହି ଗୋଟିକ ପ୍ରମାଣରୁ କିନ୍ତୁ ଅଧ୍ୟାପକ ମହାନ୍ତିଙ୍କ ମତକୁ ଯଥାର୍ଥ ରୂପେ ଗ୍ରହଣ କରି ଯାଇ ନପାରେ ।

---

× ରସକଲ୍ଲୋଳ ସମୀକ୍ଷାରେ 'ଇତିହାସର ଇଙ୍ଗିତ' ଅଧ୍ୟାୟ ଦେଖ ।

# ରସ ସମାବେଶ

ଭାରତ-ବିଖ୍ୟାତ ଉତ୍କଳୀୟ ଆଳଙ୍କାରିକ କହିଛନ୍ତି—'ବାକ୍ୟଂ ରସାତ୍ମକଂ କାବ୍ୟମ୍', ଅର୍ଥାତ୍ ରସାତ୍ମକ ବାକ୍ୟ ହେଉଛି କାବ୍ୟ। କାବ୍ୟର ବିଶେଷତ୍ୱ ଏହି ସ୍ଥଳରେ ସ୍ପଷ୍ଟ ପ୍ରକଟିତ। ଇତିହାସ ଓ ଦର୍ଶନ ପ୍ରଭୃତିରେ ସତ୍ୟ ଘଟଣା ଓ ତଥ୍ୟମୂଳକତା ଯେତେ ପ୍ରଧାନ, ସାହିତ୍ୟରେ ରସ-ପରିବେଷଣ ତାହା ଠାରୁ ଅଧିକ ଗୁରୁତର। କବି ରସର ଉପାସକ। ବିଶ୍ୱରେ ଯାହା ସୁନ୍ଦର, ପବିତ୍ର, କୋମଳ, ପ୍ରଶାନ୍ତ, ତାହା କବି ପ୍ରାଣକୁ ଆଲୋଡ଼ିତ କରେ। ଖାଲି ସେତିକି ନୁହେଁ, କବି ନିଜର ଦିବ୍ୟ ଦୃଷ୍ଟିରେ ବସ୍ତୁ ବିଶେଷର ବାସ୍ତବ ରୂପ ଦେଖିବାକୁ ଓ ଜାଣିବାକୁ ସମର୍ଥ ହୁଏ। କବି-ପ୍ରିୟ ପ୍ରକୃତି-ରାଣୀ କବି ସମକ୍ଷରେ ନିଜର ଅପୂର୍ବ ଶୋଭା ଭଣ୍ଡାର ଖୋଲି ଦିଅନ୍ତି। ଯାହା ସାଧାରଣ ଦୃଷ୍ଟିରେ ହୀନ, ଅସୁନ୍ଦର, ଅନାଦରଣୀୟ ତାହା କବି ଦୃଷ୍ଟିରେ ସମୃଦ୍ଧ, ସୁନ୍ଦର ଓ ସମାଦରଣୀୟ ରୂପ ଧାରଣ କରେ। ବିଭିନ୍ନ ଆଳଙ୍କାରିକ କାବ୍ୟର ଲକ୍ଷଣ ନାନା ଭାବରେ ନିର୍ଦ୍ଦେଶ କରିଥିଲେ ହେଁ, କାବ୍ୟର 'ରସ' ମଧ୍ୟରେ ତାହାର ମହତ୍ତ୍ୱ ଯେ ନିହିତ ଏହା ସର୍ବବାଦୀ-ସମ୍ମତ। ରାଧାନାଥଙ୍କ ଭାଷାରେ—

ଧରନ୍ତି କଳନା ନାମ ସେ ସୁନ୍ଦରୀ
ବୀଣା—ପାଣିଙ୍କର ଚାରୁ ସହଚରୀ

କବି ନିଜର ଦିବ୍ୟ ଅସ୍ତ୍ର କଳନା ବଳରେ ଅପୂର୍ବ ସୃଷ୍ଟି କରି ବିଶ୍ୱ ବିଧାତାଙ୍କୁ ଟପି ଯିବାକୁ ସାହସ କରେ। ଗୋଟିଏ ପୁରାତନ କଥାବସ୍ତୁ ଅବଲମ୍ବନରେ କେହି କାବ୍ୟ ଲେଖିଲେ ସେ କାବ୍ୟ ମୌଳିକ ନୁହେଁ ବୋଲି କୁହାଯାଇ ପାରିବ ନାହିଁ। ପ୍ରତିଭାର ସ୍ଫୂର୍ତ୍ତି ଉପରେ, ଦ୍ରଷ୍ଟାର

ହେବାର କୌଣସି କାରଣ ନାହିଁ । ଭକ୍ତଚରଣ ନିଜର ବୈରାଗ୍ୟ ଓ ଯୋଗତତ୍ତ୍ୱକୁ ଭକ୍ତିର ଅବରୋଧୀ ରୂପେ ଉପସ୍ଥାପନ କରିଅଛନ୍ତି । ତେଣୁ ଶେଷରେ ଭକ୍ତଚରଣଙ୍କୁ ଗୌଡ଼ୀୟ ବୈଷ୍ଣବ ରୂପେ ସିଦ୍ଧାନ୍ତ କରିବା ଯୁକ୍ତି-ଯୁକ୍ତ ହେବ । କବି ଦୀନକୃଷ୍ଣ ଉଭୟ ମତବାଦ ମଧ୍ୟରେ ସମନ୍ୱୟ ସ୍ଥାପନ କରିବାର ଯେଉଁ ପ୍ରଚେଷ୍ଟା କରିଥିଲେ ତାହା ଅନ୍ୟତ୍ର ଆଲୋଚନା କରା-ଯାଇଛି × । ଓଡ଼ିଆ କବି ଦେଶର ସାଂସ୍କୃତିକ ଜଳବାୟୁରୁ ନିଜକୁ ସମ୍ପୂର୍ଣ୍ଣ ରୂପେ ମୁକ୍ତ କରି ନପାରି ଓ ଅତି ଜନପ୍ରିୟ ଭାଗବତର ନିର୍ଦ୍ଦେଶକୁ ଲଙ୍ଘନ କରି ନ ପାରି ରାଧା ବଦଳରେ ବୃନ୍ଦାବତୀଙ୍କୁ ଗ୍ରହଣ କରିଛନ୍ତି । ଏହି ଗୋଟିକ ପ୍ରମାଣରୁ କିନ୍ତୁ ଅଧ୍ୟାପକ ମହାନ୍ତିଙ୍କ ମତକୁ ଯଥାର୍ଥ ରୂପେ ଗ୍ରହଣ କରି ଯାଇ ନପାରେ ।

---

× ରସକଲ୍ଲୋଳ ସମୀକ୍ଷାରେ 'ଇତିହାସର ଇଙ୍ଗିତ' ଅଧ୍ୟାୟ ଦେଖ ।

—

# ରସ ସମାବେଶ

ଭାରତ-ବିଖ୍ୟାତ ଉତ୍କଳୀୟ ଆଳଙ୍କାରିକ କହିଛନ୍ତି—'ବାକ୍ୟଂ ରସାତ୍ମକଂ କାବ୍ୟମ୍', ଅର୍ଥାତ୍ ରସାତ୍ମକ ବାକ୍ୟ ହେଉଛି କାବ୍ୟ । କାବ୍ୟର ବିଶେଷତ୍ୱ ଏହି ସ୍ଥଳରେ ସ୍ପଷ୍ଟ ପ୍ରକଟିତ । ଇତିହାସ ଓ ଦର୍ଶନ ପ୍ରଭୃତିରେ ସତ୍ୟ ଘଟଣା ଓ ତଥ୍ୟମୂଳକତା ଯେପରି ପ୍ରଧାନ, ସାହିତ୍ୟରେ ରସ-ପରିବେଷଣ ତାହା ଠାରୁ ଅଧିକ ଗୁରୁତର । କବି ରସର ଉପାସକ । ବିଶ୍ୱରେ ଯାହା ସୁନ୍ଦର, ପବିତ୍ର, କୋମଳ, ପ୍ରଶାନ୍ତ, ତାହା କବି ପ୍ରାଣକୁ ଆନ୍ଦୋଳିତ କରେ । ଖାଲି ସେତିକି ନୁହେଁ, କବି ନିଜର ଦିବ୍ୟ ଦୃଷ୍ଟିରେ ବସ୍ତୁ ବିଶେଷର ବାସ୍ତବ ରୂପ ଦେଖିବାକୁ ଓ ଜାଣିବାକୁ ସମର୍ଥ ହୁଏ । କବି-ପ୍ରିୟ ପ୍ରକୃତି-ରାଣୀ କବି ସମକ୍ଷରେ ନିଜର ଅପୂର୍ବ ଶୋଭା ଭଣ୍ଡାର ଖୋଲି ଦିଅନ୍ତି । ଯାହା ସାଧାରଣ ଦୃଷ୍ଟିରେ ହୀନ, ଅସୁନ୍ଦର, ଅନାଦରଣୀୟ ତାହା କବି ଦୃଷ୍ଟିରେ ସମୃଦ୍ଧ, ସୁନ୍ଦର ଓ ସମାଦରଣୀୟ ରୂପ ଧାରଣ କରେ । ବିଭିନ୍ନ ଆଳଙ୍କାରିକ କାବ୍ୟର ଲକ୍ଷଣ ନାନା ଭାବରେ ନିର୍ଦ୍ଦେଶ କରିଥିଲେ ହେଁ, କାବ୍ୟର 'ରସ' ମଧ୍ୟରେ ତାହାର ମହତ୍ତ୍ୱ ଯେ ନିହିତ ଏହା ସର୍ବବାଦୀ-ସମ୍ମତ । ରାଧାନାଥଙ୍କ ଭାଷାରେ—

ଧରନ୍ତି କଳନା ନାମ ସେ ସୁନ୍ଦରୀ
ବୀଣା—ପାଣିଙ୍କର ଚିର-ସହଚରୀ

କବି ନିଜର ଦିବ୍ୟ ଅସ୍ତ୍ର କଳନା ବଳରେ ଅପୂର୍ବ ସୃଷ୍ଟି କରି ବିଶ୍ୱ ବିଧାତାଙ୍କୁ ଟପି ଯିବାକୁ ସାହସ କରେ । ଗୋଟିଏ ପୁରାତନ କଥାବସ୍ତୁ ଅବଲମ୍ବନରେ କେହି କାବ୍ୟ ଲେଖିଲେ ସେ କାବ୍ୟ ମୌଳିକ ନୁହେଁ ବୋଲି କୁହାଯାଇ ପାରିବ ନାହିଁ । ଭିତ୍ତିଭୂର ସ୍ଥିତି ଉପରେ, ଦ୍ରଷ୍ଟାର

ନବ ନବ ଉନ୍ମେଷ ଉପରେ ମୌଳିକତା ପ୍ରତିଷ୍ଠିତ । ଭକ୍ତଚରଣଙ୍କ ପୂର୍ବରୁ ରାଧାକୃଷ୍ଣ ବିଷୟକ ଅନେକ କାବ୍ୟ ଥିଲେହେଁ ମଥୁରାମଙ୍ଗଳର ମୌଳିକତା ତଦ୍ୱାରା ବ୍ୟାହତ ବା ବିନଷ୍ଟ ହୋଇ ନାହିଁ । ଭକ୍ତଚରଣ ଅନ୍ୟ ମାନଙ୍କର ଛନ୍ଦା ଗ୍ରହଣ କରିଥିଲେ ମଧ୍ୟ ତାଙ୍କ ସ୍ୱାଧୀନତାର ଗୌରବ ତଦ୍ୱାରା ଲୁପ୍ତ ହୋଇ ଯାଇନାହିଁ । ଅନ୍ୟର ଭାବ-ଋଣ ଗ୍ରହଣ କରି ଚକ୍ର ବୃଦ୍ଧି ହାରରେ ସହକାରେ ତାହାସୁ ସାହିତ୍ୟକୁ ପ୍ରଦାନ କରିଅଛନ୍ତି । ରସ ସମାବେଶ ଓ ବିମଳ କଳ୍ପନା-ବିଳାସରେ ତାଙ୍କର ନିଜର ଅଖଣ୍ଡ ରୂପ ପ୍ରକାଶ ପାଇଅଛି ।

ଭକ୍ତଚରଣ ଭକ୍ତିରସର ମନ୍ଦାକିନୀ ପ୍ରବାହିତ କରିଯାଇଅଛନ୍ତି । ଏଥିରେ କରୁଣ ରସହିଁ ପ୍ରଧାନ । ସ୍ଥାନେ ସ୍ଥାନେ ଶୃଙ୍ଗାର ରସର ସମାବେଶ ହୋଇଥିବାରୁ କରୁଣ ରସ ପରିପୁଷ୍ଟି ଲାଭ କରିଅଛି । କାବ୍ୟରେ ଗୋଟିଏ ରସ ମୁଖ୍ୟ, ପ୍ରଧାନ ଓ ଅନ୍ୟ ରସ ଗୁଡ଼ିକ ଗୌଣ, ଅପ୍ରଧାନ । ମଥୁରାମଙ୍ଗଳରେ ବୀର ରସ ମଧ୍ୟ ପ୍ରକଟିତ ହୋଇଅଛି । ବିଦାୟ ପୂର୍ବରୁ ଗୋପାଙ୍ଗନାମାନଙ୍କ ସଙ୍ଗେ ଓ ମଥୁରାରେ କୁବୁଜା ପ୍ରଭୃତିଙ୍କ ସଙ୍ଗେ କଥାବାର୍ତ୍ତା ପ୍ରସଙ୍ଗରେ କବି ଶୃଙ୍ଗାରରସର ବିନ୍ୟାସ ପାଇଁ ଅବକାଶ ସୃଷ୍ଟି କରିଛନ୍ତି । କଂସ ପ୍ରଭୃତିର ବଧ ସାଧନରେ ବୀରରସ ସମାବେଶିତ ହୋଇଅଛି । କୃଷ୍ଣ ଯୁଦ୍ଧର ବର୍ଣ୍ଣନା ଏଠାରେ ଉଦ୍ଧାର କରାଯାଇ ପାରେ ।

ବାହେ ବନ୍ଧାବନ୍ଧ ମୁଣ୍ଡେ ଢୋଉଁ ଢୋଉଁ ହସ୍ତାକୁ ହସ୍ତା ପ୍ରହାରନ୍ତି
ଜାନୁକୁ ଜାନୁ ପାଦକୁ ପାଦ ଛନ୍ଦ ପଡ଼ଉଠି ପୁଣି ଗଡ଼ନ୍ତି
ନାସିକା ବଦନ କ ଅବା ବିତାସ
ଅଙ୍ଗକୁ ଅଙ୍ଗ ଚେପା ଠେସି ହୁଅନ୍ତି କାହାର ହୁଅଇ ହୁତାଶ ।

ନବରସ ମଧ୍ୟରୁ ଶୃଙ୍ଗାର, ବୀର ଓ ଶାନ୍ତ ପ୍ରଭୃତି କେତୋଟିର ବିନ୍ୟାସ ଫଳରେ କାବ୍ୟର ସୁଷ୍ମଲତା ବୃଦ୍ଧି ପାଇଅଛି।। କବିଙ୍କ କରୁଣ ରସ ବର୍ଣ୍ଣନ କଳା ବଡ଼ ପ୍ରାଣସ୍ପର୍ଶୀ ଓ ଅନୁପମ । ୫ମ, ୯ମ ଓ ୨୯ଶ ଛନ୍ଦର କରୁଣରସ ପାଠକ ପ୍ରାଣକୁ ଶୋକ-ସାଗରରେ ନିମଗ୍ନ କରିଦିଏ । ଭକ୍ତ ସମାଜର ଭକ୍ତି-

ପୂର୍ଣ୍ଣ ଦୃଷ୍ଟିଭଙ୍ଗୀ ତ୍ୟାଗ କରି ସାଧାରଣ ନାୟକ ନାୟିକାଙ୍କ ଭାବର ଆଦାନ ପ୍ରଦାନ ଦିଗରୁ ବିଚାର କଲେ ମଧ୍ୟ ଚରିତ୍ର ଚିତ୍ରଣ କିନ୍ତୁ ଜୀବନ୍ତ ପ୍ରତୀତ ହୁଏ । ଗୋପବାଳାଙ୍କର ପ୍ରାଣ ସ୍ୱରୂପ ଶ୍ରୀକୃଷ୍ଣଙ୍କର ମଥୁରା ପ୍ରସ୍ଥାନରେ ସେମାନଙ୍କର ଶୋକାନୁଭୂତ ଅନିର୍ବଚନୀୟ ହୋଇଉଠିଛି । ଶ୍ରୀକୃଷ୍ଣଙ୍କ ଅବସ୍ଥିତି ସମୟରେ ଗୋପାଙ୍ଗନାମାନଙ୍କର ପ୍ରତ୍ୟେକ ମୁହୂର୍ତ୍ତ ଯେପରି ଆନନ୍ଦ-ସାଗରର ଉଲ୍ଲୋଳ କଲ୍ଲୋଳମାଳାରେ ପ୍ଲାବିତ ହେଉଥିଲା ତାଙ୍କର ପ୍ରସ୍ଥାନରେ ସେହି ଆନନ୍ଦ ତୁଳନାରେ ବିଷାଦର ମାତ୍ରା ଅତ୍ୟଧିକ ଗଭୀର ଓ ପ୍ରସାରିତ ହୋଇଯାଇଅଛି । ସେମାନେ ଦୁଃଖର ତାଡ଼ନାରେ ଏତେଦୂର ବିଚଳିତ ହୋଇଛନ୍ତି ଯେ ଅକ୍ରୂରକୁ ହତ୍ୟା କରିବା ପାଇଁ ମଧ୍ୟ କଳ୍ପନା ଜଳ୍ପନା କରିଅଛନ୍ତି ।

କଥା ନକହ କାହିଁକି ହରି
ଅକ୍ରୂର କି ବଳେ ନେବ ଧରି
ଘେନିବୁ ଜୀବନ                ଭାଙ୍ଗିବୁ ତା ଯାନ
କଥା ରହିଥାଉ ଶୁଣପୁଣି ହେ ମୋହନ ।
(୫ । ୨୫)

ଶ୍ରୀକୃଷ୍ଣଙ୍କର ବିରହ ଦୃଶ୍ୟ ବର୍ଣ୍ଣନାରେ ୯ମ ଛାନ୍ଦ ଅନନ୍ୟ ସୁନ୍ଦର ପଦ୍ମଛନ୍ଦରେ ଭୂଷିତ ହୋଇଅଛି । ଗୋପାଙ୍ଗନାମାନେ ନିଜନିଜର ଅଙ୍ଗ-ମଣ୍ଡନରେ ତତ୍ପର ହୋଇ ନାହାନ୍ତି । ସେମାନଙ୍କର ମୁଖ-ମନ୍ଦିର ହା କୃଷ୍ଣ, ହା କୃଷ୍ଣ ଶବ୍ଦରେ ପ୍ରତିଧ୍ୱନିତ ହୋଇଉଠିଛି । ହୃଦୟରେ ସେମାନଙ୍କର କି ଦୁଃଖ ଜାତ ହୋଇଥିଲା ଏବଂ ଭକ୍ତ କବି ଗୋପୀ-ପ୍ରାଣ ଠାରୁ ନିଜ ପ୍ରାଣକୁ ଅଭିନ୍ନ ମନେ କରି କିପରି ବିଚଳିତ ଓ ବିବ୍ରତ ହୋଇ ପଡ଼ିଛନ୍ତି, କାବ୍ୟରୁ ଗୋଟିଏ ପଦ ଉଦ୍ଧାର କଲେ ସ୍ପଷ୍ଟ ବୁଝିହେବ—

କାହି ଲେଉଟିଲେ କାହି ନପାରନ୍ତି
ଆରତେ ଶଯ୍ୟାକୁ କୋଳ କରନ୍ତି ।
×          ×
ପ୍ରଖର ନିଶ୍ୱାସ
କ୍ଷଣକୁ କ୍ଷଣ ଉଠଇ ସାହସ ।

କେବଳ ଗୋପବାଳା ନୁହନ୍ତି, ଶ୍ରୀକୃଷ୍ଣଙ୍କର ବିରହରେ ସମଗ୍ର ଗୋପପୁର ବିଦୀର୍ଣ୍ଣ ଓ ବିଶୀର୍ଣ୍ଣ ହୋଇଯାଇଛି । ମାନବ ପ୍ରାଣ ତ ସାଧାରଣ କଥା, ସ୍ଥାବର ଜଙ୍ଗମମାନେ ମଧ୍ୟ ଦୁଃଖରେ ଅଭିଭୂତ ହୋଇ ପଡ଼ିଛନ୍ତି । ଉଦ୍ଧବଙ୍କ ମୁଖରେ କବି ଗୋପପୁରର କରୁଣ ଦୃଶ୍ୟ ଗୋଟିଗୋଟି କରି ଫୁଟାଇଛନ୍ତି । ଉଦ୍ଧବ କହୁଛନ୍ତି,ଗୋପକଥା କଣ କହିବି, କହିଲେ ହେଲେ ହୃଦୟ ଦୁଃଖରେ ଖଣ୍ଡି ହୋଇଯାଉଛି । ବୃକ୍ଷମାନେ କାନ୍ଦୁଛନ୍ତି, ଗାଈମାନେ ଦୁଧ ଦେଉନାହାନ୍ତି, କୃଷି କ୍ଷେତ୍ର ଶସ୍ୟ ଦେଉନାହିଁ କି ମେଘ ଜଳ ଦେଉନାହିଁ । କୂଅ ଖୋଳିଲେ ମଧ୍ୟ ପ୍ରକୃତି ଜଡ଼ୀଭୂତ ହୋଇଯାଇଥିବାରୁ ପାଣି ବାହାରୁ ନାହିଁ, ଗଛରେ ଫଳ ମଧ୍ୟ ଫଳୁ ନାହିଁ । ପଦ୍ମପତ୍ର ଗୁଡ଼ିକୁ ବିରହସନ୍ତପ୍ତା ଗୋପୀମାନେ ଛିଣ୍ଡାଇ ଆଣିଥିବାରୁ ସରୋବରର ପୂର୍ବଶ୍ରୀ ଆଉ ନାହିଁ । ଚମ୍ପା, ମଲ୍ଲୀ, ଅଶୋକ ପ୍ରଭୃତି ଫୁଲଗୁଡ଼ିକ ଖାଲି ତଳେ ପଡ଼ି ସଢ଼ୁଛି । କରୁଣ ରସର କି ରମ୍ୟବିନ୍ୟାସ ।

ଏକା ତୁମ୍ଭ ବିଚ୍ଛେଦରୁ ଚିନ୍ତା ହେଲା ମହା ଗରୁ
କାହାର ମନେ ହରଷ ନାହିଁ ହେ ସାନନ୍ଦନ୍ଦ
ରଜନୀ ଦିବସ ଝୁରୁଛନ୍ତି
ମହା କଷ୍ଟେ ଗୋପୀଏ ବଞ୍ଚିନ୍ତି ।
ଶୁଣିହିଁ ଅଛ ବିଚିତ୍ର ଦେଖିଲି ରାଜୀବନେତ୍ର
ଯମୁନା ପ୍ରବଳ ହୋଇଅଛି ।

× × ×

ତୁମ୍ଭ ବିଚ୍ଛେଦରୁ କରି ହୋଦନ୍ତି ତରଳ ନାରୀ
ନୟନୁ ଲୋତକ ବହିଯାଇ
ମିଶଇ ଯମୁନା ସଙ୍ଗେ ଏଣୁ ସେ ବଢ଼ଇ ବେଗେ
କୃତାନ୍ତ ଭଗିନୀ ଦୋଷ ନାହିଁ ହେ ସାନନ୍ଦନ୍ଦ ।

ରସ ସମାବେଶର ଚମତ୍କାରିତା ମଧ୍ୟଯୁଗର ସାହିତ୍ୟରୁ ଯେଉଁମାନେ ଉପଲବ୍ଧି କରିବାକୁ ଚାହାଁନ୍ତି, ସେମାନେ ମଥୁରାମଙ୍ଗଳ ପଢ଼ନ୍ତୁ ଛନ୍ଦ ମନୋ-

ନିବେଶ ସହକାରେ ଅଧ୍ୟୟନ କରିପାରନ୍ତି । ଓଡ଼ିଶାର ପୁରପଲ୍ଲୀରେ ଶତଶତ ଜନନୀ ଏ ଛନ୍ଦ ଅବୃତ୍ତି କରି ଆନନ୍ଦ ସ୍ରୋତରେ ନିଜନିଜକୁ ଭସାଇ ଦିଅନ୍ତି । କରୁଣ ରସାତ୍ମକ ଯେଉଁ ଦୁଇଟି ବିଖ୍ୟାତ ଛନ୍ଦ ଉତ୍କଳର ପୁରପଲ୍ଲୀରେ ସର୍ବତ୍ର ଆଦୃତ, ତହିଁରୁ ଗୋଟିଏ ହେଉଛି ମଥୁରାମଙ୍ଗଳର ଯଶୋଦା ବିଳାପ ଏବଂ ଅନ୍ୟଟି ହେଉଛି ବିଦଗ୍ଧଚିନ୍ତାମଣିର କଳାମାଣିକ ଛନ୍ଦ । କଳାମାଣିକ ଛନ୍ଦର—

"ଧିରେ ଯେନ କାନନରେ କୃଷ୍ଣ ବିଳମ୍ବିତ
ବାତ୍ସଲ୍ୟ ମମତା ଘେନି ଭିଡ଼ୁଛନ୍ତି ମାତ"

ପ୍ରଭୃତି ବାତ୍ସଲ୍ୟ ରସଭରା ପଦଗୁଡ଼ିକ ପାଠ କଲା ବେଳେ ମାତାମାନଙ୍କର ଗଣ୍ଡମଣ୍ଡଳ ଯେ ସ୍ନେହାଶ୍ରୁଧାରରେ ପ୍ଲାବିତ ହୁଏ ତାହା ସର୍ବସାଧାରଣରେ ସୁବିଦିତ । ସେହିପରି ଭକ୍ତଚରଣଙ୍କର—

ଅରେ ବାବୁ ଶ୍ୟାମଘନ ତୁ ଗଲେ ମଧୁ ଭୁବନ
କାହା ମୁଖ ଅନାଇ ବଞ୍ଚିବି

ଓ ତାହା ପରବର୍ତ୍ତୀ ଅଂଶ ପାଠକଲା ବେଳେ ଯେ କୌଣସି ଜନନୀର ଅନ୍ତର ଗଭୀର ବାତ୍ସଲ୍ୟ ରସରେ ପ୍ଲାବିତ ହୋଇଥାଏ । କବି ଏଠାରେ ଦେଶକାଳପାତ୍ରର ସଙ୍କୀର୍ଣ୍ଣ ସୀମା ଲଙ୍ଘନ କରି ସତେ ଯେପରି ଅସୀମ ଭାବରାଜ୍ୟରେ ସ୍ୱଚ୍ଛନ୍ଦ ବିଚରଣ କରିଅଛନ୍ତି । ଅବଶ୍ୟ 'ବିନାଶ୍ରୟେ ନ ବର୍ତ୍ତନ୍ତେ କବିତା ବନିତା ଲତାଃ' ଦୃଷ୍ଟିରୁ ଶ୍ରୀକୃଷ୍ଣଙ୍କର ବେଶଭୂଷା ପ୍ରଭୃତିର ବର୍ଣ୍ଣନା ଏ ସ୍ଥଳରେ ଅପରିହାର୍ଯ୍ୟ ହୋଇପଡ଼ୁଛି । କାରଣ କାବ୍ୟଟି ଆତ୍ମକେନ୍ଦ୍ରିକ ନୁହେଁ,—ବସ୍ତୁକେନ୍ଦ୍ରିକ । ହେଲେହେଁ ତହିଁରେ ବିମଳ ଭାବରାଜିର ଯେଉଁପରି ସଫଳ ବିନ୍ୟାସ ହୋଇପାରିଛି, ଚିନ୍ତା କଲେ କବିଙ୍କ ଶକ୍ତିମତ୍ତାରେ ବିସ୍ମିତ ଓ ମୁଗ୍ଧ ନହୋଇ ରହି ହୁଏନା ନାହିଁ । ପ୍ରତ୍ୟେକ ମାତା କ୍ରୀଡ଼ାନିରତ ନିଜର ଶିଶୁ ସନ୍ତାନମାନଙ୍କୁ ବେଶଭୂଷାରେ ସଜ୍ଜିତ କରନ୍ତି । ଭକ୍ତକବି ମାତାଙ୍କ ମୁଖରେ ଶିଶୁପୁତ୍ରର ବେଶ ବର୍ଣ୍ଣନା କରି ଲେଖିଛନ୍ତି—

ବାନ୍ଧିବ କାହାର କେଶ          ତୁମ୍ଭେ କର ସୁବେଶ
କାହା ଲଲାଟରେ ଦେବ ଚିତା
କାହାର କର୍ଣ୍ଣେ କୁଣ୍ଡଳ          ଖଞ୍ଜିବରେ ମୋର ବାଳ
କାହାପାଇଁ କରୁଥିବ ଚିନ୍ତା
ରେ ଜୀବଧନ
କାହା ଅଙ୍ଗୁ ଧୂଳି ଦେବ ପୋଛି
କାହାକୁ ବା ପିନ୍ଧାଇବ କାଛି ।

ଏହା ପରେ କିନ୍ତୁ ମାତୃହୃଦୟର ସୁନିର୍ମଳ ବାତ୍ସଲ୍ୟସ୍ପର୍ଶରେ କବି-ଲେଖନୀ ମୁଖର ହୋଇଉଠିଛି ।

ନିଶାକାଳେ ମୋର କୋଳେ          ଶୋଇଥାଉ ଶ୍ରମବଳେ
ସ୍ୱପନରେ ଦେଖି ହସ ହସ
ମା' ବୋଲି ଚମକି ପଡ଼ୁ          କଣ୍ଠେ ଦୁଇ ଭୁଜ ଭିଡ଼,
ପୁଣି ଶୋଉ ଘୋଡ଼ି ହୋଇ ବାସ
ରେ ଜୀବଧନ
ସେକଥା ସୁମରି ମରିଯିବି
ପୁଅ ବୋଲି କାହାକୁ ଡାକିବି ।

ମନେ ହୁଏ, ଏଠାରେ କୃଷ୍ଣଚରିତର ପ୍ରଭାବ ବା ଅଭାବ ପୂର୍ବାପର ବାଲ୍ୟ-ଶିଶୁମାନଙ୍କର ଏ ସରଳତରଳ ଅନୁଭୂତି ଓ କ୍ରିୟା କଳାପ ଦେଶ କାଳ ପାତ୍ର ନିର୍ବିଶେଷରେ ସାର୍ବଜନୀନ । ମାତାମାନଙ୍କର ସନ୍ତାନ ବାତ୍ସଲ୍ୟର ଗଭୀରତା ଏବଂ ସନ୍ତାନମାନଙ୍କର ମାତୃ-ସ୍ନେହରେ ମମତାର ଗମ୍ଭୀରତା ଏଥିରେ ଯେପରି ରୂପାୟିତ ତାହା ଅନୁପମ ଓ ଅତୁଳନୀୟ ବୋଲି ପ୍ରତୀତ ହୁଏ । ପାରିବାରିକ ଜୀବନରେ ପୁତ୍ର ବା ଦୁହିତା ପ୍ରତି ପିତାମାତାଙ୍କର ସ୍ନେହ ଓ ସେହି ସ୍ନେହମୂଳକ ଆଘାତ ମନୋମାଳିନ୍ୟ ବର୍ଣ୍ଣନା କରି କବି ଲେଖିଛନ୍ତି—

କେ ଆଣିଦେବ ନନ୍ଦକୁ ଦାଣ୍ଡେ ଖୋଜିବ କାହାକୁ
କାହାକୁ ଦେଖିବ ଗାପ ମୂଳେ
କେହୁ ଭୟେ ପଳାଇବ ନନ୍ଦଙ୍କ ଆଗେ କହିବ
ଆଜ ମୋତେ ମାଏ ମାରୁଥିଲେ
ରେ ଜୀବଧନ
ତାହାଁ ପାଇଁ ଚଳ ହେବେ ତାତ
କ୍ରୋଧେ ମତେ ଦଣ୍ଡିବେ ବହୁତ ।

ଏଠାରେ ବାତ୍ସଲ୍ୟରସ ଜୀବନ୍ତ ରୂପରେ ଦଣ୍ଡାୟମାନ ହୋଇ ପଡ଼ିଥାଏ । ଭାରତୀୟ ପଲ୍ଲୀ ଜୀବନରେ ଗୃହକୁ ବହିର୍ଗତ ପିତାଙ୍କୁ ଗୃହକୁ ଆକର୍ଷଣ କରି ଆଣିବାରେ ମାତାମାନଙ୍କର ପ୍ରଧାନ ସମ୍ବଳ ହୋଇଥାନ୍ତି ସନ୍ତାନ ସନ୍ତତି । ଏଥିରେ ଯଶୋଦାଙ୍କ ମୁଖରେ ସେହି ସୁଯୋଗର ଅଭାବ ଅନିର୍ବାଞ୍ଛିତ । କେବଳ ସେତିକି ନୁହେଁ ବେଳେବେଳେ ମାତାଙ୍କର ମଙ୍ଗଳମୟ ମଧୁରତାଡ଼ନାରେ ସନ୍ତାନମାନେ ବକ୍ଷୁବ୍ଧ ହୋଇ ସ୍ନେହ-ପ୍ରବଣ ପିତାଙ୍କ ନିକଟରେ ନିଜର ଅଭିଯୋଗ ଉପସ୍ଥାପନ କରିଥାନ୍ତି । ସନ୍ତାନସନ୍ତତିଙ୍କୁ ପ୍ରବୋଧନ ଦେବାପାଇଁ ହେଉ କିମ୍ବା ସେମାନଙ୍କ ପ୍ରତି ସ୍ନେହର ଆତିଶଯ୍ୟରୁ ହେଉ ପିତା ବିରକ୍ତି ସୂଚକ ବାକ୍ୟ ମାତାଙ୍କ ପ୍ରତି ପ୍ରୟୋଗ କରିଥାଆନ୍ତି । ସେ ବିରକ୍ତି କିନ୍ତୁ ଯଥାର୍ଥରେ ବିରକ୍ତିଦାୟକ ନୁହେଁ । ବରଂ ସେ ବିରକ୍ତିରେ ସ୍ୱର୍ଗୀୟ ସନ୍ତାନ ପ୍ରତି ପିତାର ସ୍ନେହ ଓ ବାତ୍ସଲ୍ୟ ଦେଖି ତାଙ୍କର ବାକ୍ୟ-ବାଣରେ ସେମାନେ ଅମୃତର ନିର୍ଝର ଅନ୍ୱେଷଣ କରନ୍ତି । ସେ ଦଣ୍ଡିବା ତ ଦଣ୍ଡ ନୁହେଁ । ସେ ଦଣ୍ଡରେ ପୂରିଥାଏ ଅଖଣ୍ଡ ସ୍ନେହ । ବାସ୍ତବିକ ଉକ୍ତ ଛନ୍ଦର ପ୍ରଥମ ଦ୍ୱାଦଶ ପଦ ଓଡ଼ିଆ ସାହିତ୍ୟର ଅମୂଲ୍ୟ ସମ୍ପଦ ।

ଭକ୍ତଚରଣ କେବଳ ଭକ୍ତ ନଥିଲେ—ଥିଲେ ଅପୂର୍ବ ଚରିତ୍ର ଚିତ୍ରକର । ଉତ୍ତରଯୁଗର ଶବ୍ଦାଡ଼ମ୍ବରପୂର୍ଣ୍ଣ ବେଷ୍ଟନୀ ମଧ୍ୟରୁ ସେ ଉତ୍କଳ ସର-ସ୍ୱତୀଙ୍କୁ ନିସର୍ଗ ରମଣୀୟ ଶବ୍ଦରାଜ୍ୟକୁ ଆକର୍ଷଣ କରିନେଇଥିଲେ ।

ଭକ୍ତକବିଙ୍କର କାବ୍ୟ କଳ୍ପନାର ପରିସର ମଧ୍ୟରେ ବାତ୍ସଲ୍ୟ ଓ କରୁଣହିଁ ମୁଖ୍ୟସ୍ଥାନ ଅଧିକାର କରନ୍ତି । ସେଥିପାଇଁ କବିଙ୍କୁ ବହୁ ବିଶୃଙ୍ଖଳତା ଓ ସଂଯମର ଅପେକ୍ଷା ମଧ୍ୟରେ ରହି ଏ ଦୁଇଟି ରସ ସଙ୍ଗେ ବୀର ପ୍ରଭୃତି ରସମାନଙ୍କରେ ମଧ୍ୟ ଯଥା ଯଥ ବିନ୍ୟାସ କରିବାକୁ ହୋଇଛି । ପ୍ରକୃତରେ ମଥୁରାମଙ୍ଗଳକୁ ଓଡ଼ିଆ ସାହିତ୍ୟର ଦ୍ୱିତୀୟ ରସକଲ୍ଲୋଳ କୁହାଯାଇ ପାରେ ।

---

# ରଚନା ଶୈଳୀ

ଶୈଳୀ କଣ ?—ପ୍ରତ୍ୟେକ କବି, ଲେଖକ ଓ ଶିଳ୍ପୀର ଗୋଟାଏ ଗୋଟାଏ ନିର୍ଦ୍ଦିଷ୍ଟ ଚିନ୍ତା କରିବାର କ୍ରମ ଥାଏ । ସେହି କ୍ରମରୁହିଁ ତାଙ୍କର ବ୍ୟକ୍ତିତ୍ୱ ବୁଝାଯାଏ । ଲିଖନଭଙ୍ଗୀ ବା କ୍ରମହିଁ ଓଡ଼ିଆରେ ଶୈଳୀ ନାମରେ ପରିଚିତ । ଇଂରାଜୀରେ ଷ୍ଟାଇଲ୍ କହିଲେ ଲେଖକର ପୂର୍ଣ୍ଣ ବ୍ୟକ୍ତିତ୍ୱ ଓ ଲିଖନର ସର୍ବବିଧ ବିଭାଗ ଯେପରି ବୁଝାଯାଏ, ପ୍ରାଚ୍ୟ ସାହିତ୍ୟରେ ପ୍ରାୟ ତାହା ବୁଝା ଯାଏ ନାହିଁ । ଛନ୍ଦ ପ୍ରୟୋଗ, ଅଳଙ୍କାର ସଂଯୋଜନ, ଶବ୍ଦ ବିନ୍ୟାସ, ବର୍ଣ୍ଣବିନ୍ୟାସ-ଗତ ଗୁରୁତ୍ୱ, ଭାଷାର ସମତା ଓ ସ୍ପଷ୍ଟତା ପ୍ରଭୃତି ଶୈଳୀର ଅଙ୍ଗୀଭୂତ । ସୁତରାଂ ଜଣେ କବିଙ୍କର ରଚନାଶୈଳୀ ବିଚାର କଲାବେଳେ ଏ ଗୁଡ଼ିକୁ ଦୃଷ୍ଟି କରି କାବ୍ୟର ବିଶ୍ଳେଷଣ କରିବାକୁ ହେବ । ଆହୁରି ମଧ୍ୟ ଷ୍ଟାଇଲ୍ ଦୃଷ୍ଟିରୁ ବିଚାରକଲେ ତାଙ୍କର ପ୍ରତ୍ୟେକ ଉକ୍ତି, ବର୍ଣ୍ଣନା, ସଂଳାପ, ଚରିତ୍ରଚିତ୍ରଣ ଓ କଳ୍ପନାରେ କିପରି ଗୋଟିଏ ନିର୍ଦ୍ଦିଷ୍ଟକ୍ରମ ଫୁଟି ଉଠିଛି, ତାହା ଦର୍ଶାଇବାକୁ ହେବ । ଯେକୌଣସି ଲେଖକର ଅନ୍ୟ ଲେଖକ ସହିତ ବହୁଦିଗରେ ସାମ୍ୟ ଥାଇପାରେ । ତଥାପି, ସେହି ସମତା ମଧ୍ୟରେ କି ବୈଶିଷ୍ଟ୍ୟ ଅଛି, ସେତକ ମଧ୍ୟ ଦେଖି ଦେଖାଇ ଦେବା ଉଚିତ ।

ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟ ପାଦରେ କବି ଭକ୍ତଚରଣ ଜନ୍ମଗ୍ରହଣ କରିଥିଲେ । ସେତେବେଳକୁ ଓଡ଼ିଆ ସାହିତ୍ୟ ରାଜ୍ୟରେ କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ପ୍ରବଳ ଶକ୍ତି ଅନୁଭୂତ ହେଉଥିଲା । ବହୁ କବି ତାଙ୍କର ରଚନାଭଙ୍ଗୀ ଅନୁକରଣ କରି କାବ୍ୟ ଲେଖିବାକୁ ଚେଷ୍ଟା

କରୁଥିଲେ । ଓଡ଼ିଆ ସାହିତ୍ୟରେ ସଂସ୍କୃତ ସାହିତ୍ୟ ପରି ପାଣ୍ଡିତ୍ୟପୂର୍ଣ୍ଣ ଓ କଷ୍ଟ-କାବ୍ୟ ନଥିବାରୁ ଓଡ଼ିଶାର ସଂସ୍କୃତ ପଣ୍ଡିତମାନେ ଓଡ଼ିଆ ସାହିତ୍ୟ ପ୍ରତି ବୀତଶ୍ରଦ୍ଧ ଥିଲେ । ଉପେନ୍ଦ୍ର ଭଞ୍ଜ ଭାରତୀଙ୍କର ଏ ଅଭାବ ଉପଲବ୍ଧି କରି ତାହା ଦୂର କରିବାକୁ ବୈଦେହୀଶ ବିଳାସ, କୋଟି ବ୍ରହ୍ମାଣ୍ଡ-ସୁନ୍ଦରୀ ପ୍ରଭୃତି କାବ୍ୟ ପ୍ରଣୟନ କଲେ । ଭକ୍ତଚରଣଙ୍କ ଜନ୍ମ ବିକାଶ ବେଳକୁ ଉପେନ୍ଦ୍ରଙ୍କ ଖ୍ୟାତି ସମଗ୍ର ଓଡ଼ିଶାରେ ପ୍ରାୟ ଷାଠିଏ ସତୁରିବର୍ଷ ବ୍ୟାପୀ ପ୍ରଗୃହିତ ହୋଇ ଯାଇଥିଲା । ଓଡ଼ିଆ ସାହିତ୍ୟର ଇତିହାସରେ ସେହି ଯୁଗ ଭଞ୍ଜଯୁଗ ବା ରୀତିଯୁଗ ନାମରେ ପରିଚିତ । ଭକ୍ତଚରଣ ସେହି ଯୁଗରେ ଜନ୍ମ ହୋଇ ଭଞ୍ଜଙ୍କ ପନ୍ଥାଙ୍କୁ ଅନୁସରଣ କରି ନଥିବାରୁ ତାଙ୍କର ବ୍ୟକ୍ତିତ୍ୱର ବଳଶାଳିତା କମ୍ ଜଣାଯାଏ ନାହିଁ । ମୂଳରେ ଭଞ୍ଜଯୁଗରେ ରଚନାଶୈଳୀ କହିଲେ ନିମ୍ନଲିଖିତ କେତେକ କଥା ବୁଝା-ଯାଉଥିଲା—(କ) ନାନାବିଧ ରାଗ ରାଗିଣୀରେ ଛାନ୍ଦଗ୍ରନ୍ଥ ରଚନା (ଖ) ପ୍ରଚୁର ପରିମାଣରେ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର (ଗ) ଘଟଣାର ଗତି-ଶୀଳତା ପରିବର୍ତ୍ତେ ବର୍ଣ୍ଣନା ବାହୁଲ୍ୟ ଓ କଳ୍ପନା ବିଳାସିତାର ବ୍ୟାପକତା (ଘ) ବର୍ଣ୍ଣ ବିନ୍ୟାସରେ ଓ ଶବ୍ଦ ପ୍ରୟୋଗରେ ନାନା ବିଧ ଚାତୁର୍ଯ୍ୟ ପ୍ରଦର୍ଶନ (ଙ)ଶୃଙ୍ଗାର ରସର ବହୁଳ ସମାବେଶ (ଚ)କାବ୍ୟରେ ବହୁ ଶାସ୍ତ୍ର ଦର୍ଶିତା (ଛ) ବର୍ଣ୍ଣନା ପ୍ରଭୃତିରେ ସଂସ୍କୃତ କବି ପରମ୍ପରାର ଅବଲମ୍ବିତା । ଭକ୍ତ ଚରଣ ଏ ମଧ୍ୟରୁ କେଉଁଟି ପରିହାର କରିଛନ୍ତି ଏବଂ କେଉଁଟି ଉପାଦେୟ ମନେ କରି କାବ୍ୟରେ ଫୁଟାଇଛନ୍ତି ତାହା ବିଚାର କଲେ ମଥୁରାମଙ୍ଗଳର ଶୈଳୀ-ବିଚାର ଅଗଭୀର ହେବ ନାହିଁ ।

ସ୍ୱର୍ଗତ ବିଜୟଚନ୍ଦ୍ର ମଜୁମଦାର ଭକ୍ତଚରଣଙ୍କ ଯେଉଁ କାଳ ନିର୍ଦ୍ଦେଶ କରିଛନ୍ତି ତାହା ଭ୍ରମାତ୍ମକ ବୋଲି ଏହି ଗ୍ରନ୍ଥରେ ଅନ୍ୟତ୍ର ପ୍ରତିପାଦିତ ହୋଇଛି । ସେ ନିଜ ଓଡ଼ିଆ ସାହିତ୍ୟ ପରିଚୟ—ଦ୍ୱିତୀୟ ଖଣ୍ଡର ଭୂମିକାରେ ଲେଖିଛନ୍ତି—"ମୁଁ ପୂର୍ବେ କହି ସାରିଛି ଯେ, ଭକ୍ତଚରଣ ଦୀନକୃଷ୍ଣଙ୍କ ସମସାମୟିକ ଥିଲେ । ସେ ଓ ଦୀନକୃଷ୍ଣ ନୂତନ ଓ ପ୍ରାଚୀନ ସାହିତ୍ୟର ସନ୍ଧାନ ଓ ଉଭୟର ସନ୍ଧି ବା ମଧ୍ୟବର୍ତ୍ତୀ କାଳର ଲୋକ । ନୂତନ

ଜହିବା ହ୍ରାସ୍ ମୋର ଅଟ ପ୍ରାପ୍ତ ଏହି ଯେ, ତାହା ଅପ୍ରାକୃତିକ (ଶବ୍ଦାଳଙ୍କାର ପୂର୍ଣ୍ଣ) ଗୀତ ଯାହାକ ଭକ୍ତ ଓ ତାଙ୍କ ପରବର୍ତ୍ତୀ ଲେଖକଙ୍କ ଲେଖାର ବିଶେଷତ୍ୱ । ବିଜୟବାବୁଙ୍କ ମତରେ ତେଣୁ ମଥୁରାମଙ୍ଗଳ ପୂର୍ବାପୂର ଶବ୍ଦାଡ଼ମ୍ବର ଶୂନ୍ୟ ଏବଂ ଶବ୍ଦାବିନ୍ୟାସର ଗୁରୁତ୍ୱ ବା ଆଡ଼ମ୍ବର ଢଙ୍ଗରେ ନାହିଁ । ଏହା କେତେଦୂର ସତ୍ୟ ଏଥି ପୂର୍ବେ କାଳନିରୂପଣ ପ୍ରସଙ୍ଗରେ ବିଚାର କରାଯାଇଛି ।

ଜହିବା ଅନାବଶ୍ୟକ, ମଥୁରାମଙ୍ଗଳ ମୂଳ ପାଞ୍ଚ ସାତଟି ଛାନ୍ଦ ପାଠ କଲେ କବିଙ୍କ କାବ୍ୟ ରଚନା ଶୈଳୀର ସ୍ୱରୂପ ଜଣାପିବ ।

'ସେ ଥିଲେ ପରମ ଭାଗବତ ।' ଗୋପୀ ଭାବରୁ ଭକ୍ତର ଶ୍ରେଷ୍ଠ ସମ୍ପଦ ମନେ କରି ସବଂସ କୃଷ୍ଣ ଭକ୍ତମାନଙ୍କ ସଙ୍ଗେ ନିଜକୁ ମିଶାଇ ଦେଇଛନ୍ତି । ଅକ୍ରୂର, ଯଶୋଦା ଓ ଗୋପୀମାନଙ୍କ ମୁଖରେ ସେ ଯେଉଁ କାରୁଣ୍ୟ-ଟିକ୍ତ ଭରା ବାଣୀ ପ୍ରକାଶ କରିଅଛନ୍ତି ତାହା ପାଠକଲେ ଅନ୍ତର ଅନୁକମ୍ପିତ ଓ ଝଙ୍କୃତ ହୋଇଉଠେ । ପ୍ରେମିକ ପ୍ରେମିକାଙ୍କର ଚିତ୍ତ ବିଶ୍ଳେଷଣରେ କବି ଯେତିକି ଧୂରୀଣ ସେମାନଙ୍କର ବିରହଦଶାର ଆଲେଖ୍ୟ ପ୍ରଦାନ କରିବାରେ ସେତିକି ନିପୁଣ, ମଧ୍ୟଯୁଗର ପ୍ରାୟ ସମସ୍ତ କବିଙ୍କ ପରି ପ୍ରତି ଛାନ୍ଦର ମୂଳରେ ସେ ପାଠକମାନଙ୍କୁ ସମ୍ବୋଧନ କରି ନାହାନ୍ତି । ଉପେନ୍ଦ୍ର ଓ ଅଭିମନ୍ୟୁ ଧୀର ବା ରସିକମାନଙ୍କୁ ସମ୍ବୋଧନ କରି ପ୍ରାୟ ପ୍ରତ୍ୟେକ ଛାନ୍ଦ ଲେଖି ଅଛନ୍ତି । ସାହିତ୍ୟର ଏ ବଳିଷ୍ଠ ପରମ୍ପରା ଭଙ୍ଗ କରି ଭକ୍ତଚରଣ କେବଳ ନିଜ ଚିନ୍ତାର ସ୍ୱାଧୀନତା ଓ ନୂତନତା ପ୍ରଦର୍ଶନ କରି ନାହାନ୍ତି— ବରଂ ତାହିଁ ସଙ୍ଗେ ସଙ୍ଗେ ନିଜର କୃଷ୍ଣୈକପ୍ରାଣତାର ଜ୍ୱଳନ୍ତ ନିଦର୍ଶନ ପ୍ରଦାନ କରି ଅଛନ୍ତି । ଶ୍ରୀକୃଷ୍ଣଙ୍କ ସଙ୍ଗେ ନିଜକୁ ନିତ୍ୟ ସଂପୃକ୍ତ ରଖିବା ମାନସରେ ତାଙ୍କର ନୟନ ମନୋରମ ରୂପ ବାରମ୍ବାର କଳ୍ପନା ନେତ୍ରରେ ଦର୍ଶନ କରି ଅଭିଭୂତ ହୋଇ ପଡ଼ିଛନ୍ତି । ସେଥିପାଇଁ ମଥୁରାମଙ୍ଗଳର ଅନେକ ଛାନ୍ଦରେ କାନ୍ତ କୋମଳ-ପଦାବଳୀର ଅନବଦ୍ୟ ସୁନ୍ଦର ସମାବେଶ ହୋଇଛି । ଶ୍ରୀକୃଷ୍ଣଙ୍କର ରୂପଲାବଣ୍ୟ, ବେଶଭୂଷା, ହାବଭାବ ଓ ଗୁଣ-

ଗରିମା ବର୍ଣ୍ଣନରେ କେତେବେଳେ କୃଷ୍ଣଦର୍ଶନଲାଳସୀ ଅକ୍ରୂରର, କେତେବେଳେ ଅବା କୃଷ୍ଣବିରହବିହ୍ୱଳ ମଥୁରାନାରୀମାନଙ୍କର ଅନ୍ତରରେ ପ୍ରବେଶ କରି ତଦ୍‌ଗତ ଚିତ୍ତରେ ଭକ୍ତକବି ଭଗବାନଙ୍କର ସାନ୍ନିଧ୍ୟ ଉପଲବ୍ଧି କରି ପାରିଛନ୍ତି । ଶ୍ରୀକୃଷ୍ଣ ମଥୁରା ଯାତ୍ରା କରିବାରୁ 'ଅନାଥ' ହୋଇ ବିକଳ ପ୍ରାଣରେ ଗୋପୀମାନଙ୍କର ତଥା ନନ୍ଦର ଶୋଚନୀୟ ଦଶା ବର୍ଣ୍ଣନା କରିଛନ୍ତି ।

ସଂସ୍କୃତ ଛନ୍ଦ ଶବ୍ଦରୁ ଓଡ଼ିଆ ଛାନ୍ଦ ଶବ୍ଦ ଉତ୍ପନ୍ନ । ଓଡ଼ିଆ ସାହିତ୍ୟର ଇତିହାସରେ ମଧ୍ୟଯୁଗର ସାହିତ୍ୟକୁ ଛାନ୍ଦ ସାହିତ୍ୟ ମଧ୍ୟ କୁହାଯାଇଥାଏ । ବିବିଧ ଛନ୍ଦର ପ୍ରୟୋଗରେ ଯେଉଁ କାବ୍ୟ ଗ୍ରନ୍ଥ ରଚିତ ହେଉଥିଲା ତାହା ଛାନ୍ଦ ନାମରେ ପରିଚିତ ହେଉଥିଲା । ଛାନ୍ଦ ଶବ୍ଦ ଦ୍ୱାରା ନାନା ଛନ୍ଦରେ ଲେଖାଯାଇ ଥିବା କାବ୍ୟ ଓ ସେହି କାବ୍ୟର ଗୋଟିଏ ଗୋଟିଏ ସର୍ଗ ମଧ୍ୟ ବୁଝାଯାଇଥାଏ । ଆଜି ସୁଦ୍ଧା ଉତ୍କଳର ପୁରପଲ୍ଲୀରେ ସଙ୍ଗୀତ ମୂର୍ଚ୍ଛନା-ମୟୀ ପ୍ରାଚୀନ ଛାନ୍ଦ ମାଳାର ଅନର୍ଗଳ ଆବୃତ୍ତି ଶିକ୍ଷିତ ସମାଜର କୌତୂହଳ ଉଦ୍ଦୀପନ କରେ । ଅଳଙ୍କାର ଶାସ୍ତ୍ରର ନିୟମ ଅନୁସାରେ କାବ୍ୟର ନାନାବିଧ ଭାବ ଫୁଟାଇବା ପାଇଁ ଓ ଘଟଣା ବର୍ଣ୍ଣନା କରିବା ପାଇଁ ଭିନ୍ନ ଭିନ୍ନ ଛନ୍ଦ ବା ରାଗ ରାଗିଣୀ ପ୍ରୟୋଗ କରାଯିବା ବିଧେୟ । ଦୀନକୃଷ୍ଣ, ଉପେନ୍ଦ୍ର ଭଞ୍ଜ ଓ ଲୋକନାଥ ବିଦ୍ୟାଧରଙ୍କ ପୂର୍ବରୁ ଏହି ଆଳଙ୍କାରିକ ନିୟମ ଓଡ଼ିଆ କାବ୍ୟ ସାହିତ୍ୟରେ ଆତ୍ମ ପ୍ରକାଶ କରିଥିଲେ ମଧ୍ୟ ଭଞ୍ଜଯୁଗର ସୁପ୍ରତିଷ୍ଠା ସଙ୍ଗେ ସଙ୍ଗେ ତାହାର ଆଦର୍ଶ କବିମାନଙ୍କର ଏକାନ୍ତ ପାଳନୀୟ ହୋଇ ପଡ଼ିଲା । ସଙ୍ଗୀତର ଚର୍ଚ୍ଚା ବ୍ୟାପକ ଭାବରେ ହେଉଥିବାରୁ ଓ ମୁଦ୍ରାଯନ୍ତ୍ରର ଅଭାବରେ ଗଦ୍ୟ ସାହିତ୍ୟ ପ୍ରସାରର ସମ୍ଭାବନା ଅପେକ୍ଷାକୃତ ଅଳ୍ପ ଥିବାରୁ ସାଙ୍ଗୀତିକ ସ୍ୱର ଲହରୀର ଆଶ୍ରୟ କାବ୍ୟ ଲେଖକମାନଙ୍କ ପକ୍ଷରେ ଏକପ୍ରକାର ପରମ ଉପାଦେୟ ଥିଲା । ଭକ୍ତଚରଣ ସେହି ଛାନ୍ଦ ସାହିତ୍ୟର କ୍ରମ ଓ ଆଦର୍ଶ ବିଧିବଦ୍ଧ ଭାବରେ କାର୍ଯ୍ୟକାରୀ କରିଅଛନ୍ତି । ସଂସାର ଚକ୍ରରେ ଜୀବ କପରି କ୍ରୀଡ଼ା-ପୁତ୍ତଳିକା ତୁଲ୍ୟ କେଳି କରେ

ତାହାର ଭାବ ସହିତ ସାମଞ୍ଜସ୍ୟ ରକ୍ଷି କବି ଚକ୍ରକେଳି ରାଗରେ ପ୍ରଥମ ଛାନ୍ଦ ଲେଖିଛନ୍ତି । ଦ୍ୱିତୀୟ ଓ ଚତୁର୍ଦ୍ଦଶ ଛାନ୍ଦରେ କାଳି ରାଗର ପ୍ରୟୋଗ ଅତ୍ୟନ୍ତ ଉପଭୋଗ୍ୟ । ଉଦ୍ଦଣ୍ଡ କାଳୀୟ ସର୍ପର 'ସର୍ପିଳ' ଗତି ପରି ଉକ୍ତ ଦୁଇ ଛାନ୍ଦରେ ଭାବରାଜିର ଉଚ୍ଛଳ ସ୍ରୋତ ପ୍ରବାହିତ ହୋଇଛି । ଅକ୍ରୂରର ଅନ୍ତରର ଉଦ୍‌ବେଗ କବି କାଳି ବୃତ୍ତରେ ଯେପରି ପ୍ରକାଶ କରିଛନ୍ତି, ତାହା ଆଜି ସୁଦ୍ଧା ଛାନ୍ଦ ପ୍ରୟୋଗ ଓ ଶବ୍ଦ ବିନ୍ୟାସ କୌଶଳକୁ ପାଠକଙ୍କୁ ସମଦ୍ଧିବାପନ୍ନ କରିଦିଏ ।

ଦୂରୁ ଅନାଇ ଡାକିବେ ଦୁଇ,
ହଇ ଅକ୍ରୂର ଆସ
ସେ ବାଣୀ ଶୁଣି ଶ୍ରବଣ ବେନି
ତେଜିବେ ସର୍ବ ଦୋଷ ।

× × ×

ଆନନ୍ଦ ହୋଇ ରଥରୁ ଡେଇଁ
ଶିରେ ନଉଛେ ବାଲି
ହା କୃଷ୍ଣ ବୋଲି ନପାରେ ଗୃହି
ନୟନୁ ଅଶ୍ରୁ ଗଳି ।
କମ୍ପ ହୁଡ଼ଇ ପଡ଼ି ଉଠଇ
ଗଡ଼ଇ ପାଦ ପରେ
ନୂନ୍ୟକୁ ଭୋଳି କଣ୍ଠ ଆକୁଳ
କମ୍ପଇ ପ୍ରେମ ଭରେ ।

ତଥା କୃଷ୍ଣ ଦର୍ଶନେଚ୍ଛୁ ମଥୁରାନାରୀଙ୍କର ବିଭ୍ରମ ବର୍ଣ୍ଣନାରେ—

କଉଁ ନାଗରୀ ରସ ସାଗରୀ
ଅନାଇ ଦେଲା ଡାଳି

ରହସ୍ୟ ବାଳୀ ନ ପାରେ ଚଳି
ଗୃହେଁ ଲେ ବନମାଳୀ ।
× × ×
କେଉଁ କାରଣ ନାରୀ ସୁବର୍ଣ୍ଣ ଶାଢ଼ୀ
ଭୂଷଣ ହୋଉଥିଲା
ଅଧେ ଧଇଲା ଅଧେ ପିନ୍ଧିଲା
ଉଠି କେ ପଳାଇଲା ।

ପ୍ରତ୍ୟେକ ପଦର ଆବୃତ୍ତିରେ ବର୍ଣ୍ଣିତ ଘଟଣା ଯେ ମାନସ ପଟରେ ଅଙ୍କିତ ହୁଏ ତାହା ନୁହେ—ହୃଦୟ ମଧ୍ୟ ତହିଁରେ ପରିପ୍ଳୁତ ହୋଇ ଘଟଣା-ମଗ୍ନ ହୋଇ ଉଠେ । ପଞ୍ଚମ ଛାନ୍ଦର ମଧୁର ଚଉତିଶା ବାଣୀ ଓ ଷଷ୍ଠ ଛାନ୍ଦର ବାହୁଡ଼ା ବସନ୍ତ ବାଣୀ କରୁଣ ରସର ପ୍ରବାହ ଲାଗି ସୁପ୍ରଶସ୍ତ ତଟିନୀ ତୁଲ୍ୟ । ପଞ୍ଚମ ଛାନ୍ଦର ଦ୍ୱିତୀୟ ପଦଠାରୁ ଚବିଶ ପଦଯାଏ ଥରେ ଉପଯୁକ୍ତ ସ୍ୱର ସଂଯୋଗରେ ପାଠ କଲେ ବର୍ଣ୍ଣ ସଂସାରରୁ ଚିରକାଳ ଲାଗି ସୁଖ ଓ ଆନନ୍ଦ ବିଦାୟ ନେଇଥିବା ପରି ପ୍ରତୀୟମାନ ହୁଏ । ସେହିପରି ଷଷ୍ଠଛାନ୍ଦ ଆଜି ଯେ ଏତେ ଉଚ୍ଚ କୋଟୀର କବିତା ରୂପେ ପରିଗଣିତ ହୁଏ ତାହା ବୋଧହୁଏ କେବଳ ଭାବ ଗାମ୍ଭୀର୍ଯ୍ୟରୁ ନୁହେ, ସ୍ୱର ସଂଯୋଗ କରି ପାଠ କଲେ ଅନୁଭବ କରିହେବ ଯେ, ଛନ୍ଦର ଅନୁକୂଳତା ରସର ଉପଲବ୍ଧି ପାଇଁ ଅନେକ ପରିମାଣରେ ଦାୟୀ । କାବ୍ୟର ଅନ୍ୟାନ୍ୟ ଛନ୍ଦ ମଧ୍ୟରେ ସପ୍ତଦଶ ଓ ଊନବିଂଶ ଛାନ୍ଦର ଛନ୍ଦ ପ୍ରଣିଧାନର ଯୋଗ୍ୟ । ଉଭୟ ଛାନ୍ଦ ବିପ୍ରସିଂହା ଚଉତିଶା ବାଣୀରେ ଗାନ କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଛି । ଏ ପ୍ରସଙ୍ଗରେ ମନେ ରଖିବାକୁ ହେବ, ଗୋଟିଏ ଗୋଟିଏ କବିତାକୁ ବା ପଦ୍ୟକୁ ଏକାଧିକ ରାଗ ରାଗିଣୀରେ ଗାନ କରାଯାଇପାରିବ । କିନ୍ତୁ ଏକାଧିକ ରାଗ ଭିତରୁ ଯେଉଁ ରାଗରେ ଗାନ କଲେ କବିଙ୍କ ଅନ୍ତରର ଭାବ ପାଠକର ଅନ୍ତରରେ ସହଜରେ ଖେଳି ଯାଇ ପାରିବ ସେହି ରାଗରେ ଗାନ କରିବା ପାଇଁ କବି ନିର୍ଦ୍ଦେଶ ଦେଇଛନ୍ତି । ଅନୁଭବୀହିଁ କର୍ମର ପ୍ରକୃଷ୍ଟ ସରଣୀ ପ୍ରଦର୍ଶନ କରିପାରେ । ମଧ୍ୟଯୁଗର ପ୍ରତ୍ୟେକ କବି ସୁଗାୟକ ଥିବାର

ଭୂରି ଭୂରି ପ୍ରମାଣ ଅନେକ କମ୍ବଦନ୍ତୀରୁ ମିଳେ । ଭକ୍ତଚରଣ ସ୍ୱରଚିତ ଭବଭାର ମାଧୂରୀ ଯେଉଁ ରାଗର ସାହାଯ୍ୟରେ ଆସ୍ୱାଦନ କରିଛନ୍ତି ପାଠକଙ୍କ ପାଇଁ ତାହାହିଁ ନିର୍ଦ୍ଦେଶ କରି ଅଛନ୍ତି ।

କାବ୍ୟର ରସୋପଲବ୍ଧି ଗୁଣର ମଞ୍ଜୁଳ ସମାବେଶ ଉପରେ ପ୍ରତିଷ୍ଠିତ । ରସ କାବ୍ୟର ଆତ୍ମା ଓ ଗୁଣ ତାହାର ସ୍ଥାୟୀ ଧର୍ମ । ପୁରୁଷ ଯେପରି ଅନ୍ତରଙ୍ଗ ଓ ବହିରଙ୍ଗ ଉତ୍କର୍ଷ ଦ୍ୱାରା ଶୋଭିତ ହୁଏ କାବ୍ୟ ସେହିପରି ଗୁଣ ଓ ଅଳଙ୍କାର ଦ୍ୱାରା ସୁନ୍ଦର ରୂପ ଧାରଣ କରେ । ଅଳଙ୍କାର ଶାସ୍ତ୍ରରେ କାବ୍ୟର ଉତ୍କର୍ଷ ବିଧାୟକ ଯେଉଁ ସମସ୍ତ ଗୁଣ ଆଲୋଚିତ ହୋଇଛି, ସେ ମଧ୍ୟରେ ମାଧୂର୍ଯ୍ୟ, ପ୍ରସାଦ ଓ ଓଜଗୁଣ ପ୍ରଧାନ । ମଥୁରାମଙ୍ଗଳର ସ୍ଥୂଳ କଳେବର ଏହି ଗୁଣ-ରତ୍ନ ମାନଙ୍କର ସୁସଂଯତ ବିନ୍ୟାସ ହେତୁରୁ କମନୀୟ ଦୀପ୍ତିରେ ଝଲସି ଉଠିଛି । ତଳେ ପ୍ରତ୍ୟେକ ଗୁଣର ଗୋଟିଏ ଗୋଟିଏ ଦୃଷ୍ଟାନ୍ତ ଉଦ୍ଧାର କରିଯାଇଛି ।

(କ) ଜାହା ଅଙ୍ଗେ ଚନ୍ଦ୍ରସମ ଲେପିବା କରି ସୁଷମ
ନିଦ୍ରାରେ କେ ହେଉଥିବ ବାରି ।
କାହାକୁ ଅଞ୍ଜନ ଦେବ ବସ୍ତ୍ରାପାଟ ଶୁଆଇବ
ପିତାଙ୍କୁ ମାଗିବ କେହ୍ନୁ ହରି ।
ଏ କଥା ସ୍ମରି ଯିବା ମରି
ଜଣେ ଯେବେ ଯିବୁ ମଧୁପୁରୀ ।

(୬—୨)

(ଖ) ଶିରେ ଭୃଙ୍ଗ— ଭୃଙ୍ଗ ପୁଚ୍ଛ ଗୋଛ
ଜାହାଇ ଇନ୍ଦ୍ର ଶରାସନ
ଅଳକା ପନ୍ତି ବାଳ ଅଳି ଗଞ୍ଜଇ
ଦେଖି କେ ନୋହିବ ଉଚ୍ଛନ୍ନ ।
ଭ୍ରୂଲତା, କି ଅବା ମଦନ କୋଦଣ୍ଡ

ଅଞ୍ଜନ ଲତାକୁ ଗୁଞ୍ଜ କରିଅଛୁ
କଞ୍ଜ ନୟନ ପଞ୍ଚକାଣ୍ଡ ।

୧୩ । ୪

(ଗ) ଗୃଣ୍ଡୁର ନିଧନ ଦେଖି ତମ ତମ
ହୋଇଲେ ଦେବକୀ ନନ୍ଦନ
ମୁଷ୍ଟିକ ମୁଣ୍ଡରେ ମୁଷ୍ଟି ପ୍ରହାରିଲେ
ଚିର୍ ଶିରେ ବଜ୍ର ଯେସନ
ଫାଟିଲା, ମୂର୍ଦ୍ଧନ ଛାଡ଼ିଲା ପ୍ରାଣକୁ
ପାଇଲା ସୁଗତି ପରମ ସମ୍ପତ୍ତି
ହରିଲା କଳୁଷ ଭରକୁ ।

୨୨ । ୧୩

ମାଧୁର୍ଯ୍ୟ, ପ୍ରସାଦ ଏବଂ ଓଜଗୁଣର ଏ ଯେଉଁ ଉଦାହରଣ ଗୁଡ଼ିକ ଯଥାକ୍ରମେ ପ୍ରଦତ୍ତ ହେଲା, ଏ ଗୁଡ଼ିକ ରସ ଉପଭୋଗର ପରମ ସହାୟକ । ଏବେ କେବଳ ରସର ଅନ୍ତରଙ୍ଗ ଗୁଣାବଳୀରେ କାବ୍ୟ ପୁରୁଷର ଅଙ୍ଗ ମଣ୍ଡନ କରି ନାହାନ୍ତି—ବହିରଙ୍ଗ ଅଳଙ୍କାରର ବିନ୍ୟାସରେ ମଧ୍ୟ ଉତ୍କର୍ଷ ବଢ଼ାଇଛନ୍ତି ।

ଉପେନ୍ଦ୍ର ଭଞ୍ଜଙ୍କ ସମୟରୁ କାବ୍ୟରେ ଅଳଙ୍କାରର ଆଡ଼ମ୍ବର-ପ୍ରଦର୍ଶନ ପ୍ରାୟ ପ୍ରତ୍ୟେକ କବିର ପ୍ରିୟ କର୍ତ୍ତବ୍ୟ ବିବେଚିତ ହେଲା । ଉପେନ୍ଦ୍ର ଏବଂ ତାଙ୍କର ଅନୁଗାମୀ ଅଭିମନ୍ୟୁ ପ୍ରଭୃତି କବି ବୃନ୍ଦ ସାହିତ୍ୟ-ରସିକ ଓ ପଣ୍ଡିତମାନଙ୍କ ପାଇଁ ମୁଖ୍ୟତଃ କାବ୍ୟରଚନା କରିଥିଲେ । ଭକ୍ତଚରଣ କିନ୍ତୁ ନିଜର ସ୍ୱାଧୀନ ଚିନ୍ତା ଓ ବଳିଷ୍ଠ ବ୍ୟକ୍ତିତ୍ୱ ବଳରେ ଭଞ୍ଜଯୁଗର ନିଗଡ଼ ବେଷ୍ଟନୀ ମଧ୍ୟରୁ ବହୁ ପରିମାଣରେ ନିଜକୁ ମୁକ୍ତ କରି ଭକ୍ତି-ପିପାସୁ ଜନ ସାଧାରଣଙ୍କ ଉଦ୍ଦେଶ୍ୟରେ ଏ କାବ୍ୟ ରଚନା କରିଥିଲେ । ତେଣୁ ତାଙ୍କ କାବ୍ୟରେ ଭଞ୍ଜଯୁଗର କ୍ଲିଷ୍ଟ ଶବ୍ଦ ବିନ୍ୟାସ ପ୍ରାୟତଃ ଦେଖିବାକୁ ମିଳେ ନାହିଁ । ଯଥାର୍ଥରେ ସମଗ୍ର କାବ୍ୟରେ ମାତ୍ର ତିନି ଚାରୋଟି କ୍ଲିଷ୍ଟ ପଦ ଦେଖିବାକୁ ହୁଏ । ତଳେ ମାତ୍ର ଦୁଇଟି ଦୃଷ୍ଟାନ୍ତ ଦିଆଯାଉଛି ।

(କ) କେ ବୋଲଇ କାଳଠାରୁ କୁମୁଦ ମରିବେ
କୁମୁଦ ରମଣ ଯେଣୁ କୁମୁଦକୁ ପିବେ
ଅନ୍ଧକାରକୁ ବାଢିବ,
ସତେ କ ଚନ୍ଦ୍ରମା ଚନ୍ଦ୍ର ମଣ୍ଡଳ ଛାଡ଼ିବ ।

୪ । ୭

(ଖ) ଶିଖଣ୍ଡ ଉପରେ ଗିଖଣ୍ଡ ଅଇଲ୍—
ଜନକ-ମଇନ-ବାହନ
ମହା ପ୍ରଳୟରେ ରସ ବରଷିଲେ
ସେ ସେଠେ ହୁଅଇ ମଜନ ।

୭ । ୧୪

ଏ ପ୍ରକାର ତଥାକଥିତ ଅପ୍ରାକୃତକତା ଯୁଗ ରୁଚିର ଅନିବାର୍ଯ୍ୟ ପ୍ରଭାବର ମୂକ ସାକ୍ଷୀ ।

ହେଲେହେଁ, କବି ଭକ୍ତଯୁଗର ସରଳ ଶବ୍ଦାଳଙ୍କାର ପ୍ରୟୋଗରେ କୃଷ୍ଣ ପ୍ରଦର୍ଶନ କରି ନାହାନ୍ତି । ଯମକ ବା ବିପରୀତାଭାସ ପ୍ରଭୃତି ପରିତ୍ୟାଗ କରିଥିଲେହେଁ କବି ଅନୁପ୍ରାସର ମନୋରମ ଓ ସୁସଙ୍ଗତ ପ୍ରୟୋଗ କରି ଅଛନ୍ତି । ଶ୍ରୀକୃଷ୍ଣଙ୍କର ଗୋଚାରଣ ଲୀଳା ବର୍ଣ୍ଣନରେ——

ଦୁହେଁନ୍ତି ଗୃହେ ଭରନ୍ତି ଭଣ୍ଡେ
ଦୁଅନ୍ତି ତକା ତକ
ଗୋପ ନନ୍ଦନେ ବାଦ ବଚନେ
ଏକ ଆରେକ ବକ ।

× × ×

ନଯୁକ୍ତ ଧାର ବହୁଣ ଭର
ତନ୍ତନ୍ତି ଗୃହେଁ ଗୃହେଁ
ଜଳେ ଲବଣ ପ୍ରାୟେ ପ୍ରେମମଣ
ମଣିଲୁ କହୁ କହୁ । (୨ୟ ଛାନ୍ଦ)

ଯଥା ଶ୍ରୀକୃଷ୍ଣଙ୍କର ରୂପ ବର୍ଣ୍ଣନାରେ—

ସୁନ୍ଦର ଦିଶଇ ନୀଳ-ଇନ୍ଦୀବର ପରା
ନାସାରେ ମୁକୁତା କି ସେ ଚନ୍ଦ୍ର ପାଶେ ତାରା ।
(୧୦ । ୨୨)

× × ×

କମ୍ବୁ କଣ୍ଠେ ମୋତିଦାମ ଦିଶଇ ମଣ୍ଡୁଳ
ନୀଳ ଜୀମୂତ ଅଙ୍କରେ କିବା ବକମାଳ ।
(୨୦ । ୨୪)

ମଥୁରାମଙ୍ଗଳର ପ୍ରାୟ ପ୍ରତ୍ୟେକ ଛାନ୍ଦରେ ଏହି ଭଳି ଶ୍ରୁତିମଧୁର ଓ ରସାଳ ପଦାବଳୀ ବହୁ ସଂଖ୍ୟାରେ ସମାବେଶିତ ହୋଇଅଛି । ଭକ୍ତଚରଣ ଅର୍ଥାଳଙ୍କାରର ଆବଶ୍ୟକତା ଓ ଗୁରୁତ୍ୱ ସମ୍ବନ୍ଧରେ ପରିମାଣରେ ଉପଲବ୍ଧି କରିଛନ୍ତି ।

ଏଥିପୂର୍ବେ ପ୍ରସାଦ ଗୁଣର ଯେଉଁ ଦୃଷ୍ଟାନ୍ତ ଦିଆଯାଇଛି ତହିଁରେ କଳ୍ପନାର ମନୋହାରିତା ଏବଂ ଭାବ ଉଦ୍ଦୀପନାର ଚମତ୍କାରିତା ଏକତ୍ର ଫୁଟି ଉଠିଛି । ସ୍ଥଳବିଶେଷରେ ବାଣଭଟ୍ଟଙ୍କ ପରି ବହୁ ଉପମା ଏକତ୍ର ସନ୍ନି-ବେଶିତ କରି ଅଛନ୍ତି—

ଦୁର୍ଜନ ଜନକୁ ସୁଜନ ନ ବୁଝେ
ମୂର୍ଖକୁ ନ ବୁଝେ ବେଦ
ବାଟପୀ ନାୟିକ ପତି ନ ବୁଝଇ
କୋଳ ନ ଜାଣେ ରମ୍ଭାସ୍ୱାଦ
କୁକୁର ଯଜ୍ଞଶାଳେ ଥିଲେ ଯେମନ୍ତ
ଦର୍ପିଷ୍ଟ ଦୁର୍ମିଳା-ନନ୍ଦନକୁ ମଧୁ କଇତ ଦିଶଇ ତେମନ୍ତ ।
(୨୩ । ୧୨)

ପୁଣି ଗୋଟିଏ ଦୃଷ୍ଟାନ୍ତ ଉଦ୍ଧାର କରାଯାଇ ପାରେ—

ବସନ୍ତ ଗଲେ ଯେହ୍ନେ ଦିଶେ ବନ
ବରଷା ଶେଷେ ଯେହ୍ନେ ନଦୀମାନ
ଅନ୍ଧାର ପକ୍ଷେ ଯେହ୍ନେ କଳାଧର
ପଦ୍ମ ଯେସନେ ପଡ଼ିଲେ ଶିଶିର
ହୋଇଯାଏ କ୍ଷୀଣ,
ଚନ୍ଦ୍ର ବିନୁ ଯେହ୍ନେ କୁମୁଦ ବନ ।

କାନ୍ତ ବିହୁନେ ଯେସନେ ରମଣୀ
ଧର୍ମ ବିହୁନେ ଯେସନେ ଧରଣୀ,
ବେଦ ବିହୂନେ ଯେହ୍ନେ ଦ୍ୱିଜବର,
ଧନ ବିହୂନେ ଯେହ୍ନେ ଦିଶେ ନର
ପୁତ୍ର ବିନେ ନାରୀ
ରାଜ୍ୟ ବିହୂନେ ଯେହ୍ନେ ଦଣ୍ଡଧାରୀ ।

ବିଦ୍ୟା ପାସୋରିଲେ ଯେହ୍ନେ ପଣ୍ଡିତ
ମାତା ବିହୂନେ ଯେସନେ ବାଳୁତ
ଚକ୍ଷୁ ବିହୂନେ ଶୋକବନ୍ତ ଜନ
ଭୂଷଣ ବିନୁ ଯେହ୍ନେ ନାରୀମାନ
ଦିଶେ ଅସୁନ୍ଦର
ବୃକ୍ଷ ବିହୂନେ ଯେହ୍ନେ ଟିହିବର ।
କୃଷ୍ଣ ବିହୂନେ ସେହିମତେ ଗୋପୀ
ଚିନ୍ତା-ରତ୍ନାକରେ ହୋଇଲେ ଡାପୀ ।

(୯ । ୧୯-୨୪)

ଏହି ସବୁ ଦୃଷ୍ଟାନ୍ତରୁ କବିଙ୍କର କଳ୍ପନା-ଶକ୍ତି, ପ୍ରତ୍ୟୁତ୍ପନ୍ନମତିତା, ପ୍ରତିଭା ଏବଂ ସାଂସାରିକ ଅନୁଭୂତିପୂର୍ଣ୍ଣ ହୃଦୟର ଜୀବନ୍ତ ପ୍ରମାଣ ମିଳେ । ଏଥିରେ କେବଳ ଦୃଷ୍ଟାନ୍ତ ସ୍ଥଳରେ କେତେଗୁଡ଼ିଏ ଉପମା ଦିଆଯାଇ ନାହିଁ । ବରଂ ସ୍ଥାବର ଠାରୁ ଆରମ୍ଭ କରି ସବୋଇ ବୁଦ୍ଧିଜୀବୀ ପର୍ଯ୍ୟନ୍ତ

ବିଭିନ୍ନ ପ୍ରକାର ପ୍ରାଣୀମାନଙ୍କର ଧର୍ମ, ଗୁଣ, ଭୂଷଣ, କର୍ତ୍ତବ୍ୟ ଏବଂ ସ୍ୱଭାବର ଯେଉଁ ବିଚିତ୍ର ଅନୁଭୂତିମୂଳକ ସୂଚନା ଦିଆଯାଇଛି ତହିଁରୁ ପାଠକ-ମାନଙ୍କର ଜ୍ଞାନୋପଲବ୍ଧି ବ୍ୟତୀତ ଅନେକ ମନୋରଞ୍ଜକ ତଥ୍ୟ ମଧ୍ୟ ଶିଖିବାର ଅଛି ।

ମଥୁରାମଙ୍ଗଳର ୨୯ଶ ଛାନ୍ଦର ଗୋଟିଏ ପଦ ପାଠରୁ ଭକ୍ତଚରଣଙ୍କର ଓଡ଼ିଆ କବି ସମାଜରେ ସ୍ୱତନ୍ତ୍ର ଆସନ ଦାବୀ କରିବାର ଆନୁଷଙ୍ଗିକ ଅଧିକାର ଅଛି ବୋଲି ମଧ୍ୟ କୁହାଯାଇପାରେ । ବିରହବିଧୁରା ରାଧା ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ ଯେଉଁ ପତ୍ର ଖଣ୍ଡିକ ଲେଖିଥିଲେ ସେ ତାହା କେଉଁପରି ଭାବରେ ପଠାଇ ଦେଇ ନ ଥିଲେ । କବିଙ୍କ ଭାଷାରେ—

ଏତେକ ଲେଖି ନବୀନ ଗୋରଜାସ୍ତି
କଉତୁକ କରି ମୁଦିଲେ
କୁସୁମ ମଞ୍ଜୁ ଭିତରେ ଥୋଇ ବାଳୀ
ବି କି ମନରେ ବିଚାରିଲେ
ତାପରେ, ଭ୍ରମର ଗୋଟିଏ ଲିହିଲେ,
ପୁଣି ଅଞ୍ଜନା-ନନ୍ଦନ ଚନ୍ଦ୍ର ଚୂଡ଼
ତହିଁ ପାଚୁଶେ ବସାଇଲେ ।

(୨୯ । ୩୮)

ଏ ଅଂଶ ଉଦ୍ଧାର କରି ପଣ୍ଡିତ ନୀଳକଣ୍ଠ ଦାସ ସ୍ୱୀୟ ଓଡ଼ିଆ ସାହିତ୍ୟର କ୍ରମ ପରିଣାମରେ (ପୃ ୯୨-୯୩) ରେ ଏଥିର ସାଂସ୍କୃତିକ ଆଲୋଚନା କରିଛନ୍ତି । ତାଙ୍କ ମତରେ, ବହୁ ସ୍ଥଳରେ ସଂସ୍କୃତ ସାହିତ୍ୟ ଯେପରି ଓଡ଼ିଆ ସାହିତ୍ୟ ଉପରେ ପ୍ରଭାବ ବିସ୍ତାର କରିଛି, ସେହିପରି କେତେକ ସ୍ଥଳରେ 'ଓଡ଼ିଆ ପ୍ରାକୃତ ସାହିତ୍ୟ' ମଧ୍ୟ ସଂସ୍କୃତ ସାହିତ୍ୟକୁ ପ୍ରଭାବିତ କରିଅଛି । ସେ ଲେଖିଛନ୍ତି—

"ଜଗନ୍ନାଥ ମିଶ୍ର ବୋଲି ଜଣେ 'ରସକଳ୍ପଦ୍ରୁମ' ନାମକ ଏକ ବିରାଟ ଗ୍ରନ୍ଥ ଲେଖିଛନ୍ତି । ଏହା ଷୋଡ଼ଶ ଶତାବ୍ଦୀ ପରର ଲେଖା । ଏଥିରେ

ତଥର ଭିନ୍ନ ଭିନ୍ନ ବିଭାଗ ଉଦାହରଣରେ ଦେଖାଇବା ପାଇଁ କବିମାନଙ୍କ ଶ୍ଳୋକ ସବୁ ଉଦ୍ଧାର କରାଯାଇଛି । ସେ ସବୁ ପ୍ରାୟଶଃ ଓଡ଼ିଶାର କବିତା । ସେଥିରୁ ଗୋଟିଏ ଶ୍ଳୋକ ହେଉଛି ଏହି—କାଚିତ୍ କାନ୍ତା ରମଣ ବସତିଂ ପ୍ରେଷୟନ୍ତୀ କରଣ୍ଡଂ, ଦୃଢ଼ବନ୍ଧେ ସଦନ୍ମୁ ମଲିଚେଦ୍ ବ୍ୟାଳମେଷ୍ୟ ପଦ୍ମକ୍ଷୋଦ୍ ଗୌରୀକାନ୍ତଂ ପବନ ତନୟଂ ଚମ୍ପକଂ ଗୃହଛିଦ୍ର ସୂକ୍ଷ୍ମତ୍ୟାର୍ଥେ। ନିପୁଣ ଚଲଚୋ ମଲ୍ଲିନାଥଃ କବୀନ୍ଦ୍ରଃ । × × • × ଏପରି କାହିଁକି ଲେଖିଲେ କି, ପବନ ବାଟ ଫୁଲ ଶୁଖିଯାଇ ପାରେ । ସାପ ହେଉଛି ପବନାଶନ । ସେ ପବନ ପିଇଯାଏ । ତେଣୁ ଫୁଲ ଯାଏ ପବନ ଆସି ତାକୁ ଶୁଖାଇ ପାରିବ ନାହିଁ । ଶିବଙ୍କ ମୁଣ୍ଡରେ ଚନ୍ଦ୍ର ଅଛନ୍ତି, ଗଙ୍ଗା ଅଛନ୍ତି । ତେଣୁ ଫୁଲ ଜାଉଁଳା ରହିବ । ହନୁମାନ ଜନ୍ମରୁ ସୂର୍ଯ୍ୟଙ୍କୁ ଗିଳିବାକୁ ଧାଇଁଥିଲେ । ତେଣୁ ହନୁମାନ୍ ପାଖରେ ଥିଲେ ସୂର୍ଯ୍ୟ ତାକୁ କଷ୍ଟ କରଣ ପକାଇବେ ନାହିଁ । × × ପାଖରେ ଚମ୍ପା ଥିଲେ ଭ୍ରମର ଆସି ଫୁଲମଣ୍ଡାର ଫୁଲକୁ ଚୁମ୍ବି ନଷ୍ଟ କରିବ ନାହିଁ । ମଥୁରାମଙ୍ଗଳ ୨୯ ଛାନ୍ଦର ୩୮ଶ ପଦରେ ଠିକ୍ ଏହି କଥାହିଁ ଅଛି ।"

ଏହା ପରେ ସେ ଲେଖିଛନ୍ତି—ଏହା ଓଡ଼ିଶାର ଯଥାର୍ଥ ପ୍ରାକୃତ ସାହିତ୍ୟର ସାଧନା । × × × ଏହା ଓଡ଼ିଶାର ବାୟୁ ମଣ୍ଡଳରୁ ବାହାରିଛି । ଓଡ଼ିଆ ସାହିତ୍ୟର ଏହା ଗୋଟିଏ ସ୍ୱତନ୍ତ୍ର, ସ୍ୱାଧୀନ ଓ ନିତ୍ୟପ୍ରକାଶ ।"

ବାସ୍ତବରେ ମଥୁରାମଙ୍ଗଳର ଏହି ପଦଟି ଓଡ଼ିଶାର କାବ୍ୟ ଶୈଳୀ ଯାନ୍ତ୍ରିକ ପରମ୍ପରା ଓ ସାହିତ୍ୟ ସାଧନାର ବଗୁର ଅବକାଶରେ ଚିର ସ୍ମରଣୀୟ ରୂପେ ପ୍ରତିଷ୍ଠିତ ହୁଏ ।

ଭକ୍ତଚରଣଙ୍କର ବିଚିତ୍ର କଳ୍ପନା ଶକ୍ତି ଓ ଚିତ୍ରକଳାର ଅନ୍ୟତମ ଶ୍ରେଷ୍ଠ ନିଦର୍ଶନ ରୂପେ ସପ୍ତମ ଛାନ୍ଦର ଉଲ୍ଲେଖ କରାଯାଇ ପାରେ । ଭକ୍ତକବି ମଧ୍ୟଯୁଗର ରୀତିବାଦୀ କବିମାନଙ୍କ ତୁଲ୍ୟ ଏକାଧିକ ଅର୍ଥ ପ୍ରକାଶକ୍ଷମ ଶବ୍ଦମାନଙ୍କର ସାହାଯ୍ୟ ଗ୍ରହଣ ନ କରି ମଧ୍ୟ କଳ୍ପନା ଚିତ୍ରଟି ଫୁଟାଇ ପାରିଛନ୍ତି ।

ଶ୍ରୀକୃଷ୍ଣଙ୍କୁ ସେ ରାମଚନ୍ଦ୍ର, ଭ୍ରମର, ସାଗର ଓ ଚନ୍ଦ୍ରଙ୍କ ସଙ୍ଗେ ତୁଳନା କରିଛନ୍ତି । ତାଙ୍କ ସୁରା ଏ ପଦଗୁଡ଼ିକ ଆବୃତ୍ତି କରି ଏ ଦେଶର ଭକ୍ତଜନମାନେ କ୍ଷମା କରନ୍ତି । ଶ୍ରୀରାମଚନ୍ଦ୍ରଙ୍କ ସଙ୍ଗେ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ତୁଳନା କରି କବି ରାମାୟଣ ସଙ୍ଗେ ଭାଗବତର ଏକ ପ୍ରକାର ଅଦ୍ଭୁତ ସାମଞ୍ଜସ୍ୟ ପ୍ରଦର୍ଶନ କରିଛନ୍ତି । ଗୋପୀ ମୁଖରେ ପ୍ରକାଶ କରିଛନ୍ତି—

ଦଶରଥ ସୁତ ପ୍ରାୟ ନନ୍ଦ ସୁତ କହୁଛ ତ ଆଣି ବିଗ୍ରହ
ସେ ଛାଡ଼ିଥିଲେ ସିନା ଏକ ନାୟିକା ତୁମ୍ଭେତ ଛାଡ଼ୁଛ ଅପାର
କୃଷ୍ଣ ହେ, ସେ ବଧିଲେ ଏକ ବାଳୀକି
ତୁମ୍ଭେ ଯେତେ ବାଳୀ ମାରି ଯାଉଅଛ ମନେ ହେଜି ପାରୁ ନାହିଁ କି ?
ତୁମ୍ଭେ କୃଷ୍ଣଚନ୍ଦ୍ର ସେ ଶ୍ରୀରାମଚନ୍ଦ୍ର ଏଣୁ ମିଶିଗୁଣ ବହୁଛ
ସେ ତାତ ମାତ ଛାଡ଼ି ବନେ ପଶିଲେ ତୁମ୍ଭେ ଏବେ ଚେଜି ଯାଉଛ ?
କୃଷ୍ଣ ହେ, ସେ ନେଇଥିଲେ ସହୋଦର
ତୁମ୍ଭେ ସେହି ରୂପେ ଭ୍ରାତଙ୍କୁ ନେଉଛ ଦୁହେଁ ହେଲ ଏକ ପ୍ରକାର
ତାଙ୍କୁ ସୁମନ୍ତ୍ର ସ୍ୟନ୍ଦନରେ ବସାଇ ନେଲେ ଘୋର ବନକୁ
ତୁମ୍ଭଙ୍କୁ ଅକ୍ରୂର ସେହି ପରକାରେ ନେଉଅଛି ମଧୁବନକୁ ।
କୃଷ୍ଣ ହେ, ସେ ସଙ୍ଗେ ନେଇଥିଲେ ନାରୀ
ଏହି ସୂତ୍ରେ ତୁମେ ଦଶା ପଡ଼ୁଅଛ, ଆଉ ସକଳ ଗୁଣେ ସରି ।

ବାସ୍ତବିକ, ରଚନାର ଏହି ମାଧୁର୍ଯ୍ୟ ଆଜି ଭକ୍ତଚରଣଙ୍କୁ ସମୁଚ୍ଚ ଆସନ ପ୍ରଦାନରେ ଏବଂ ବିପୁଳ ଜନପ୍ରିୟତା ସମ୍ପାଦନରେ ସମର୍ଥ ହୋଇଅଛି । ସ୍ଥାନେ ସ୍ଥାନେ ଗୁରୁ ଚଣ୍ଡାଳ ଦୋଷ ପରିଲକ୍ଷିତ ହୁଏ । କିନ୍ତୁ ମର୍ମସ୍ପର୍ଶୀ-ପ୍ରଧାନ ଛାନ୍ଦ ସାହିତ୍ୟରେ ଆବୃତ୍ତି ଭଙ୍ଗୀର ଜନମନୋଜ୍ଞତା ଦ୍ୱାରା ସେହି ଦୋଷ ଦୃଷ୍ଟି ପଥରୁ ସ୍ୱତଃ ଦୂର ହୋଇଥାଏ । ଭକ୍ତିର ଗାମ୍ଭୀର୍ଯ୍ୟ ପ୍ରକାଶରେ ହିଁ ହେଉ, ରଚନାର ସ୍ୱତନ୍ତ୍ର ଶୈଳୀରେ ମଧ୍ୟ କବିଙ୍କର ଶକ୍ତି ବିକାଶ ପରିସ୍ଫୁଟ ହୋଇଅଛି ।

—

# ବିଷୟ ବିନ୍ୟାସରେ କବିଙ୍କ ଆହରଣ

ପାଠକ ସାଧାରଣ ବେଳେ ବେଳେ ମନେକରନ୍ତି, ମୌଳିକ ଉପାଦାନରେ ବା ଅଭିନବ କଥାବସ୍ତୁର ଅବଲମ୍ବନରେ ରଚିତ କାବ୍ୟହିଁ ମୌଳିକ କାବ୍ୟ । କିନ୍ତୁ ସମାଲୋଚକର ଦୃଷ୍ଟିରେ ଏ ଧାରଣା ନିତାନ୍ତ ଅମୂଳକ । ପୁରାତନ କଥାବସ୍ତୁର ଅବଲମ୍ବନରେ ନିତାନ୍ତ ରମଣୀୟ, ରୁଚିସଙ୍ଗତ ଓ ଯଥାର୍ଥ ମୌଳିକ କାବ୍ୟ ମଧ୍ୟ ରଚନା କରାଯାଇ ପାରେ । ଉପାଦାନର ପ୍ରାଚୀନତା କିମ୍ବା କଥାବସ୍ତୁର ପୂର୍ବବର୍ତ୍ତିତା ମୌଳିକତାର ଅପକର୍ଷ ବିଧାୟକ ନୁହେଁ । ମଥୁରାମଙ୍ଗଳର କଥାବସ୍ତୁ ଅତି ପ୍ରାଚୀନ। ସଂସ୍କୃତ ଭାଗବତ ବ୍ୟତୀତ ମହାଭାରତ-ଅନ୍ତର୍ଗତ ହରିବଂଶ ଓ ବ୍ରହ୍ମବୈବର୍ତ୍ତ ପୁରାଣରେ ଶ୍ରୀକୃଷ୍ଣ ଚରିତର ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳେ । ଏଠାରେ ମନେ ପକାଇ ଦେବାକୁ ହେବ ଯେ ଶ୍ରୀକୃଷ୍ଣଲୀଳା ସମ୍ପର୍କରେ ଯେତେ କାବ୍ୟ ରଚନା କରାଯାଇଛି, ସେ ସବୁ ଅତି ପ୍ରାଚୀନ ନୁହେଁ । ଶ୍ରୀକୃଷ୍ଣଙ୍କର ନାବକେଳି, ଭାରତ ବେଶ ଧାରଣ ପ୍ରଭୃତି ଗତ ୫୦୦ ବର୍ଷ ମଧ୍ୟରେ ରଚନା ବୋଲି ସ୍ପଷ୍ଟ ଜଣାଯାଇଛି । ସେ ଯାହା ହେବ, ଶ୍ରୀକୃଷ୍ଣ ଲୀଳାର ମୁଖ୍ୟ ଘଟଣାବଳୀ ମଧ୍ୟରେ ଗୋପପୁରରେ ବିହାର, ଅକ୍ରୂର ମାରଣ ଓ କଂସ-ବଧ ସାଧନ ପ୍ରଧାନ । ଓଡ଼ିଆ ଭାଗବତ ରଚିତ ହେବା ସମୟରୁ ଓଡ଼ିଆର କବିମାନେ ବିଶେଷ ପରିମାଣରେ ତାହାଁରୁ ପ୍ରେରଣା ଲାଭ କରି ନାନା ନାନାର କୃଷ୍ଣଲୀଳାମୂଳକ କାବ୍ୟାବଳୀ ଲେଖିଅଛନ୍ତି । ଅଷ୍ଟବଡ଼ୀ ଜଗନ୍ନାଥ ଦାସଙ୍କ ଭାଗବତ ବ୍ୟତୀତ ବିପ୍ର ନାରାୟଣଙ୍କ ହରିବଂଶ ଓ ଅଚ୍ୟୁତାନନ୍ଦଙ୍କ ହରିବଂଶ ମଧ୍ୟ ମଧ୍ୟଯୁଗର ବୈଷ୍ଣବ ସାହିତ୍ୟ ଉପରେ ପ୍ରଭାବ ବିସ୍ତାର କରିଛନ୍ତି ।

କବି ଘାନକୃଷ୍ଣ ଦାସଙ୍କ ରସ କଲ୍ଲୋଳ ଓଡ଼ିଶାର ପୁରପଲ୍ଲୀରେ ସୁବିଦିତ ଓ ବିଶେଷ ଜନପ୍ରିୟ । ଘାନକୃଷ୍ଣ ଦାସ ରସକଲ୍ଲୋଳ କାବ୍ୟ ଲେଖିବା ଆଗରୁ ମଧୁମଙ୍ଗଳ ନାମକ ଖଣ୍ଡିଏ କାବ୍ୟ ଲେଖିଥିଲେ । ମଥୁରାକୁ ମଧୁପୁରୀ କୁହାଯାଏ । ଏହାଁରେ କଂସବଧମୂଳକ 'ମଥୁରାର ମଙ୍ଗଳ' ବର୍ଣ୍ଣନା କରାଯାଇଛି । ପରେ ମଧୁମଙ୍ଗଳକୁ ବିସ୍ତାରିତ କରି ଓ 'କ' ନିୟମ ରକ୍ଷା କରି (ରସକଲ୍ଲୋଳ କାବ୍ୟର ପ୍ରତି ଛାନ୍ଦର ପ୍ରତି ପଦର ପ୍ରତିପାଦର ପ୍ରଥମ ଅକ୍ଷର 'କ') ରସକଲ୍ଲୋଳ ରଚନା କରିଥିଲେ । ଭକ୍ତଚରଣଙ୍କ ଉପରେ ମଧୁମଙ୍ଗଳର ପ୍ରଭାବ ମଧ୍ୟ ପଡ଼ିଛି । ଏଠାରେ ଗୋଟିଏ ମାତ୍ର ଦୃଷ୍ଟାନ୍ତ ଦିଆଯାଇପାରେ । ମଧୁମଙ୍ଗଳରେ ଘାନକୃଷ୍ଣ ଠାଏ ଲେଖିଛନ୍ତି—

ଯେସନ ଭସ୍ମ ସ୍ଫୁଲିଙ୍ଗ
ପାଇଲେ ବାୟୁ ସଂଯୋଗ
କ୍ରମେ ହୋଇ ବଳାଧିକାର, ପୋଡ଼େ ସଂସାର

[ ୭ମ ଛନ୍ଦ, ୩୨ ପଦ]

ମଥୁରାମଙ୍ଗଳରେ ଭକ୍ତଚରଣ ମଧ୍ୟ ଲେଖିଛନ୍ତି—

ଭସ୍ମକୁଣ୍ଡରେ ଅଗ୍ନି କଣା ଥାଇ
ମନ୍ଦ ପବନେ ବଳଷ୍ଟ ହୁଅଇ

[୧ମ ଛାନ୍ଦ-୪୮ ପଦ]

ଏ ଉଭୟ ବର୍ଣ୍ଣନା ଗୋଟିଏ ଜାତୀୟ ପ୍ରସଙ୍ଗରେ କରାଯାଇଛି । "ମଧୁମଙ୍ଗଳ" ନାମରୁ ମଥୁରାମଙ୍ଗଳ ନାମ କରଣର ପ୍ରେରଣା ମଧ୍ୟ ଭକ୍ତଚରଣ ପାଇଥିବେ । ମଧୁମଙ୍ଗଳ ଅପେକ୍ଷା ରସକଲ୍ଲୋଳ ବିପୁଳତର ଓ ସମଧିକ ସୂକ୍ଷ୍ମପୂର୍ଣ୍ଣ ହୋଇ ଥିବାରୁ କବି ରସକଲ୍ଲୋଳ ପ୍ରତି ବିଶେଷ ଆକୃଷ୍ଟ ହୋଇଥିବା ଅସମ୍ଭବ ପ୍ରତୀତ ହେଉନାହିଁ । ଆଲୋଚନାରୁ ଜଣାଯିବ କବି ବହୁସ୍ଥଳରେ ରସକଲ୍ଲୋଳ ଦ୍ୱାରା ପ୍ରଭାବିତ ହୋଇଛନ୍ତି, ହେଲେହେଁ ରସ-ସମାବେଶ, ପଦସଙ୍ଘଟନ, ଚରିତ୍ର ଚିତ୍ରଣ ଓ ଅଳଙ୍କାର ବିନ୍ୟାସରେ ନିଜର ଅସାଧାରଣ ସ୍ୱାଧୀନତା ରକ୍ଷାକରି 'ମଥୁରାମଙ୍ଗଳକୁ ମୌଳିକ କାବ୍ୟର

ସ୍ଥୂଳ ରୀତିରେ ଭୂମିକା କରିଅଛନ୍ତି । ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ, ବିପ୍ର ନାରାୟଣ ଓ ଅଚ୍ୟୁତାନନ୍ଦଙ୍କ ହରିବଂଶ ଏବଂ ରସକଲ୍ଲୋଳ ତୁଳନାରେ କବିଙ୍କର ମୌଳିକତା ବା ଅବଲମ୍ବିତାରେ କେଉଁ କେଉଁ ସ୍ଥଳରେ ପ୍ରକଟିତ ହୋଇଅଛି, ଏଠାରେ ଆଲୋଚନା କରାଯାଇ ପାରେ ।

(୧) ମୂଳ ଭାଗବତରେ ଓ ଓଡ଼ିଆ ଭାଗବତରେ ଅକ୍ରୂରର ମଥୁରା ଯାତ୍ରା ପରେ କେଶୀର ମୃତ୍ୟୁ ବର୍ଣ୍ଣିତ । ମାତ୍ର ରସ କଲ୍ଲୋଳ ଅବଲମ୍ବନରେ ଭକ୍ତଚରଣ ମଥୁରାଯାତ୍ରା ପୂର୍ବରୁ କେଶୀର ମୃତ୍ୟୁ ବିଧାନ କରିଛନ୍ତି ।

(୨) ମୂଳ ଭାଗବତରେ ଅକ୍ରୂର ମୁଖରେ କଂସର ପତ୍ର-ପ୍ରେରଣ କଥା ନାହିଁ । କିନ୍ତୁ ଓଡ଼ିଆ ଭାଗବତରେ ଅଛି । ବିପ୍ର ନାରାୟଣ, ଅଚ୍ୟୁତାନନ୍ଦ ଓ ଦୀନକୃଷ୍ଣ ମଧ୍ୟ ଏହା ଲେଖିଛନ୍ତି ଏବଂ ଭକ୍ତଚରଣ ପତ୍ର ପ୍ରେରଣରେ ଏମାନଙ୍କର ଅନୁବର୍ତ୍ତୀ ।

(୩) ଅକ୍ରୂର ମଥୁରାରେ ପ୍ରଥମେ ସମରୂପ ଗୋପାଳ ବାଳଙ୍କ ମଧ୍ୟରୁ ଶ୍ରୀକୃଷ୍ଣଙ୍କୁ ଚିହ୍ନି ନ ପାରିଥିବା କଥା ନାହିଁ । କିନ୍ତୁ ଓଡ଼ିଆ ଭାଗବତର ଅବଲମ୍ବନରେ ଭକ୍ତଚରଣ ଅକ୍ରୂରର ଭ୍ରାନ୍ତି କରାଇଛନ୍ତି—ତେଣୁ ସେ ରାମଚନ୍ଦ୍ରଙ୍କୁ ଗୋପାଳବାଳ ମେଳରେ ଚିହ୍ନି ପାରୁ ନାହାନ୍ତି ।

(୪) ଭକ୍ତଚରଣ ଲେଖିଛନ୍ତି—"ପିତାଙ୍କ ଆଦେଶ ହେଲେ ମୁଁ ମଥୁରା ଯିବି"ବୋଲି ଶ୍ରୀକୃଷ୍ଣ ଅକ୍ରୂରଙ୍କୁ କହିବାରୁ ସେ ଚିନ୍ତିତ ହୋଇଥିଲେ । ତଥାପି 'ମଥୁରା ଯିବି କଂସ ମାରିବି' ବୋଲି ପ୍ରତିଜ୍ଞା କରିଥିଲେ । ଏହା ମୂଳ କିମ୍ବା ଓଡ଼ିଆ ଭାଗବତରେ ନାହିଁ । ଦୁଇଟି ଯାକ ହରିବଂଶ କିମ୍ବା ରସକଲ୍ଲୋଳ ଆଶ୍ରୟରେ କବି ଏପରି ଲେଖିଛନ୍ତି ।

(୫) ଶ୍ରୀକୃଷ୍ଣଙ୍କର ମଥୁରା-ଗମନ ସମ୍ବାଦରେ ବିଚଳିତ ଗୋପୀଙ୍କ ମୁଖରେ ଶ୍ରୀକୃଷ୍ଣ ଲୀଳାର ଏକାଂଶ ବର୍ଣ୍ଣନା ଭାଗବତରେ ନାହିଁ । କବି ବିପ୍ର ନାରାୟଣ ହରିବଂଶର ସଂକ୍ଷିପ୍ତ ବର୍ଣ୍ଣନାକୁ ବିସ୍ତାରିତ କରି ଅଛନ୍ତି ମାତ୍ର ।

(୬) ଶ୍ରୀକୃଷ୍ଣଙ୍କର ମଥୁରା ପ୍ରୟାଣ କାଳୀନ ଯଶୋଦା-ବିଳାପ ମୂଳ

ଭାଗବତରେ ନଥିଲେ ମଧ୍ୟ ଓଡ଼ିଆ ଭାଗବତରେ ଅଛି । ତଥାପି ଭକ୍ତଚରଣ ଏଠାରେ ଅଚ୍ୟୁତାନନ୍ଦଙ୍କ ହରିବଂଶର ବର୍ଣ୍ଣନା ଅନୁସରଣ କରିଅଛନ୍ତି ।

(୭) ଧନୁ ଯଜ୍ଞ ପରେ ଗୋପପୁରକୁ ଫେରି ଆସିବାର "ବୃନ୍ଦାବନ କଣ୍ଟ" ଓଡ଼ିଆ ଭାଗବତ ଓ ହରିବଂଶଙ୍କ୍ରୀଳାର ଅନୁରୂପ ହୋଇଛି । ମୂଳ ଭାଗବତରେ ଏ "କଣ୍ଟ" ନାହିଁ ।

(୮) ମୂଳ ଓ ଓଡ଼ିଆ ଭାଗବତରେ ଅଛି, ଅକ୍ରୂର ମଥୁରା ମାର୍ଗରେ ପାଣିରେ ଦୁଇଥର ବୁଡ଼ି ପ୍ରଥମେ ସହସ୍ର ଫଣାଧାରୀ ଅନନ୍ତଙ୍କୁ ଦେଖି ପରେ ଶଙ୍ଖ ଚକ୍ରଗଦାଧାରୀ କୃଷ୍ଣଙ୍କୁ ଦେଖିଲେ । କିନ୍ତୁ ଭକ୍ତଚରଣ ପ୍ରଥମେ କୃଷ୍ଣ ଚନ୍ଦ୍ରଙ୍କୁହିଁ ଦେଖାଇଛନ୍ତି । ଭାଗବତରେ ଅକ୍ରୂରର ଦୀର୍ଘ ସ୍ତୁତି ସମାବେଶିତ ହୋଇ ଥିଲେହେଁ ଭକ୍ତଚରଣ କେବଳ ସ୍ତୁତି ପାଠ କଥା ଲେଖିଛନ୍ତି ।

[୯] ମଥୁରାମଙ୍ଗଳ ଅନୁସାରେ ଶ୍ରୀକୃଷ୍ଣ ନଗରସ୍ନାନ କାଳୀନ ଅନ୍ତର୍ଭୂତ ବିଷୟରେ ଅକ୍ରୂରକୁ ପ୍ରଶ୍ନ ପଚାରିଲେ ଓ ଅକ୍ରୂର ଯଥାର୍ଥ ଉତ୍ତର ଦେଇଥିଲେ । ଏହା ମୂଳ ଭାଗବତରେ ନାହିଁ ।

[୧୧-୩-୫ ପୋ]

[୧୦) ଆଧୁନିକ ଆଲୋଚକ ମତାନ୍ତ ଲେଖିଛନ୍ତି—

"ଅକ୍ରୂରଙ୍କର କୃଷ୍ଣଙ୍କୁ ସ୍ୱପୁର ନେବାରେ ଅନୁରୋଧ ଓ ସ୍ତୁତ ବିଷୟ ଭାଗବତ ଗ୍ରନ୍ଥରେ ଅଛି । କବି ତାହା କାବ୍ୟାନୁରୋଧରେ ପରିହାର କରିଅଛନ୍ତି ।" (ମଥୁରାମଙ୍ଗଳ ମୁଖବନ୍ଧ, ପୃ:୧୪/) କିନ୍ତୁ ଏ ମତ ଠିକ ନୁହେଁ । ମଥୁରାମଙ୍ଗଳରେ ମଧ୍ୟ ଅକ୍ରୂରର 'ଅନୁରୋଧ' ବର୍ଣ୍ଣନା କରି ଯାଇଛି:—

ଅକ୍ରୂର କହେ ହେ ଦେବ ରାଏ
ଆଜ ମୋ ପୁରେ ଯିବା
ଗ୍ରାମକ ନେହ ଦୃଷ୍ଟି ପାଇ
କଂସରେ ଭେଟି ହେବା (୧୨-୨୦)

[୨୨] ମୂଳ ଭାଗବତରେ ଅଛି, ନନ୍ଦ ଓ ଗୋପ ବାଳକମାନେ ମଥୁରା-ଯାତ୍ରୀ ଶ୍ରୀକୃଷ୍ଣଙ୍କୁ ଆଗରୁ ଯାଇ ଅପେକ୍ଷା କରିଥିଲେ । କିନ୍ତୁ ଭକ୍ତଚରଣ ଲେଖିଛନ୍ତି, ମାତା ପିତା ଓ ସଙ୍ଗୀମାନଙ୍କ ପାଇଁ ଟିକିଏ ଅପେକ୍ଷା କରିବାକୁ ଶ୍ରୀକୃଷ୍ଣ ଅକ୍ରୂରଙ୍କୁ ଅନୁରୋଧ କରିଥିଲେ । ଏହା ଓଡ଼ିଆ ଭାଗବତର ଅନୁରୂପ ।

[୨୩] ମଥୁରା ଗଡ଼ ପ୍ରବେଶ କରିବା ନିମିତ୍ତ ଶ୍ରୀକୃଷ୍ଣଙ୍କ ଅନୁରୋଧ ଓ ଦ୍ୱାର-ପାଳ ଠାରୁ ଅନୁମତି ପ୍ରାପ୍ତି ଭାଗବତରେ କଥିତ ହୋଇନାହିଁ ।

[୨୩] ଶ୍ରୀକୃଷ୍ଣଙ୍କୁ ମାରିବାର ମନ୍ତ୍ରଣା ହୁଇଟି ଭାଗବତରେ କଂସ ଅକ୍ରୂରଙ୍କୁ ଗୋପପୁର ପଠାଇବା ଆଗରୁ ବର୍ଣ୍ଣିତ ହୋଇଅଛି । କିନ୍ତୁ ଭକ୍ତଚରଣ ପ୍ରଥମ ଛାନ୍ଦରେହିଁ ବୀରମାନଙ୍କର ମୃତ୍ୟୁ ଓ କୃଷ୍ଣ ମାରଣ ମନ୍ତ୍ରଣା ପ୍ରକାଶ କରିଛନ୍ତି ।

ଯେତେ ଗଲେ ସହାରିବା ନିମନ୍ତେ
ତାଙ୍କୁ ମାଇଲ ଗୋବିନ୍ଦ କଂସହେତେ

× ×

ବଳେ ଧରି ମାରିବା ନନ୍ଦସୁତ (୧ମ ଛାନ୍ଦ)

[୨୪] ରଜକର ମୃତ୍ୟୁ ପରେ ମୁକ୍ତିଲାଭ ମଥୁରାମଙ୍ଗଳରେ ବର୍ଣ୍ଣିତ । ଏହା ମୂଳ ଭାଗବତରେ ନ ଥିଲେହେଁ ଓଡ଼ିଆ ଭାଗବତ, ରସକଲ୍ଲୋଳରେ କଥିତ ଓ ବିପ୍ରନାରାୟଣଙ୍କ ହରିବଂଶରେ ଅଛି । ବାସୁଦେବରଥି ପୁରାଣରେ ମଧ୍ୟ ତାହାର ମୁକ୍ତି ବର୍ଣ୍ଣନା କରାଯାଇଛି ।

[୨୫] ଗନ୍ଧାଯୁତଙ୍କୁ 'ହରମାଗ ବୋଲି' ଶ୍ରୀକୃଷ୍ଣଙ୍କ ମୁଖରେ ଉକ୍ତି ମୂଳ ଭାଗବତରେ ନାହିଁ । ଓଡ଼ିଆ ଭାଗବତରେ ମୂଳ ଅନୁସୃତ । କିନ୍ତୁ ବିପ୍ର ନାରାୟଣଙ୍କ ହରିବଂଶର ଅବଲମ୍ବନରେ ଭକ୍ତଚରଣ "ବର ମାଗ

"ବୋଲି" ଗଜାସୁରକୁ କହି ପରେ ବାଞ୍ଛିତ ବର ପ୍ରଦାନ କରିଅଛନ୍ତି ।

(୨୬) ଭକ୍ତଚରଣ ଶ୍ରୀକୃଷ୍ଣଙ୍କୁ ମାଳାକାର ଦ୍ୱାରରେ ପ୍ରବେଶ କରାଇ ତାଙ୍କୁ ଜଣାଇଛନ୍ତି—(ଜାଣନ୍ତି ରାମ ଗୋବିନ୍ଦ ବେନି) ଏହା ମୂଳ ଭାଗବତରେ ନ ଥିଲେହେଁ ଓଡ଼ିଆ ଭାଗବତରେ ଅଛି ।

(୨୭) ଦ୍ୱାରୀମାନଙ୍କ ଦ୍ୱାରା ନିଷିଦ୍ଧ ଓ ତିରସ୍କୃତ ହେବାରୁ ରାମକୃଷ୍ଣ ବଳ ପୂର୍ବକ ଧନୁର୍ଗୃହରେ ପ୍ରବେଶ କଲେ । ଦ୍ୱାରୀଙ୍କ ଗାଳିଦାନ ମୂଳରେ ନାହିଁ । ପୁଣି ସଶସ୍ତ୍ର ପଥରୋଧ ବର୍ଣ୍ଣନା କବିଙ୍କ ନୂତନତା । "ମାଡ଼ି ବଜ୍ର ମୁଥ, ପଡ଼ିଲେ ଦ୍ୱାରୀ ହୋଇ ଯୂଥ ଯୂଥ" ଲେଖି କବି ନିଜର ମୌଳିକତା ଦର୍ଶାଇଛନ୍ତି ।

(୨୮) କବି, କଂସଙ୍କ ଦ୍ୱାରା ଭକ୍ତଙ୍କ ମୃତ୍ୟୁ ସମ୍ବାଦ ଶୁଣାଇ କହାଇଛନ୍ତି—"ବୋଲଇ କଂସ ହୋଇଲି ନିଷ୍ଟେ ନାଶ, କପାଳି ଧରାଇ ଆଣିଲି ।" ଏହା ଅଚ୍ୟୁତାନନ୍ଦଙ୍କ ହରିବଂଶର ଅନୁରୂପ । ଭାଗବତରେ ଏହା ନାହିଁ ।

(୨୯) ପ୍ରଭାତ ବର୍ଣ୍ଣନାରେ କବିଙ୍କ ଉପରେ ଦୀନକୃଷ୍ଣ ଦାସଙ୍କ(ରସକଲ୍ଲୋଳ) ପ୍ରଭାବ ସୁସ୍ପଷ୍ଟ ।

(୩୦) ବଂଶୀ ଛନ୍ଦର ବିଭ୍ରମ ବର୍ଣ୍ଣନା ଉପରେ ରସକଲ୍ଲୋଳର ପ୍ରଭାବ ସ୍ପଷ୍ଟ । 'ଭାଗବତ'ରେ ଓ 'ବୈଦେହୀଶ ବିଳାସରେ' କୃଷ୍ଣ ଓ ରାମଚନ୍ଦ୍ର, ଦର୍ଶନାଭିଳାଷିଣୀ ନାରୀମାନଙ୍କର ବିଭ୍ରମ ବର୍ଣ୍ଣନା କବି ଅବଶ୍ୟ ପଢିଥିବେ ।

(୩୧) ମୃତ୍ୟୁ ପରେ ହସ୍ତୀର ମୁକ୍ତି ବର୍ଣ୍ଣନାରେ କବି ଓଡ଼ିଆ ଭାଗବତର ଅନୁସରଣ କରିଛନ୍ତି ।

(୩୨) କବି ନିଜର ମୌଳିକତା ବଳରେ ମତ୍ତ ହସ୍ତୀର ବଧ ସାଧନ ଶ୍ରୀକୃଷ୍ଣଙ୍କ ବଂଶୀ ଦ୍ୱାରା କରାଇ, ପ୍ରଭୁଙ୍କ ଅସୀମ ଶକ୍ତିର ସୂଚନା ଦେଇଛନ୍ତି । ବଂଶୀର ଶକ୍ତି ଜାଣିବା ପାଇଁ ଅଭିମନ୍ୟୁଙ୍କ ବିଦଗ୍ଧ ଚିନ୍ତାମଣିର ୭୨ ଛନ୍ଦ ଆଲୋଚ୍ୟ । ଚାଣୁର ଓ ମୁଷ୍ଟିକର ମୁକ୍ତି ବର୍ଣ୍ଣନା ରସକଲ୍ଲୋଳର ଅନୁସାରୀ ।

(୨୩) କବି 'କୁକ୍କୁଟ୍' ମାଲ କଥା ଲେଖିଛନ୍ତି । କିନ୍ତୁ ଭାଗବତ ହରିବଂଶରେ କେବଳ 'କୂଟ' ଅଛି । ଏଠାରେ କବିଙ୍କର ଭ୍ରାନ୍ତି ଥାଇପାରେ ।

ଭକ୍ତଚରଣ ନିଜ କାବ୍ୟରେ ବିଷୟ ସମାବେଶ କରିବାକୁ ଯାଇ ଅନେକ ସ୍ଥଳରେ ପୂର୍ବବର୍ତ୍ତୀ କବି ମାନଙ୍କର ପନ୍ଥାରେ ଗତି କରି ନାହାନ୍ତି । ଉପରେ ଯେଉଁ କେତେଗୋଟି କଥାର ଉଲ୍ଲେଖ କରାଯାଇଛି, ସେଥିରୁ ଆହୁରି ଅନେକ ବିଷୟ ମଥୁରାମଙ୍ଗଳ ଆଲୋଚନା କଲେ ଦୃଷ୍ଟି ପଥାରୂଢ଼ ହୁଏ । ଅଧ୍ୟାପକ ଶ୍ରୀବଲ୍ଲଭ ମହାନ୍ତି ଏ ଦୃଷ୍ଟିରୁ ଯେଉଁ ପାଣ୍ଡିତ୍ୟପୂର୍ଣ୍ଣ ଓ ସୁବିସ୍ତୃତ ଆଲୋଚନା ମଥୁରାମଙ୍ଗଳ (ପ୍ରାଚୀ) ମୁଖବନ୍ଧରେ ସନ୍ନିବେଶିତ କରିଛନ୍ତି, ତାହାଁରୁ ଏ ଭଳି ଶତାଧିକ ତଥ୍ୟ ଉପଲବ୍ଧ ହୁଏ । ସେହି ମୁଖବନ୍ଧର ଅବଲମ୍ବନହିଁ ଏ ଅଧ୍ୟାୟର ଜୀବାତୁ ।

ମଧ୍ୟ ଯୁଗର କବିମାନେ ପୂର୍ବବର୍ତ୍ତୀ ସଂସ୍କୃତ ଓ ଓଡ଼ିଆ ପୁରାଣ-କାବ୍ୟ-ମାନଙ୍କର ତନ୍ନ ତନ୍ନ ଆଲୋଚନା କରୁଥିଲେ । ସୁତରାଂ ଉଜ୍ଜ୍ୱଳ ନୀଳମଣି, ଭକ୍ତି ରସାମୃତସିନ୍ଧୁ ପ୍ରଭୃତି ଗୋସ୍ୱାମୀ ସାହିତ୍ୟ, ମହାଭାରତ, ହରିବଂଶ, ଭାଗବତ, ବିଷ୍ଣୁ ଓ ବ୍ରହ୍ମବୈବର୍ତ୍ତ ପ୍ରଭୃତି ପୁରାଣ, ଓଡ଼ିଆ ମହାଭାରତ, ରାମାୟଣ, ଭାଗବତ ଓ ହରିବଂଶ ପ୍ରଭୃତି ପୁରାଣ ଓ ଧର୍ମ ଗ୍ରନ୍ଥ ମନୋଯୋଗ ପୂର୍ବକ ଅଧ୍ୟୟନ କରୁଥିଲେ । ସେହି କାରଣରୁ ସ୍ଥାନେ ସ୍ଥାନେ କବିଙ୍କ ଲେଖନୀ ଅନ୍ୟ କବିଙ୍କର ବିଚିତ୍ର ଭାବାବଳୀ ଦ୍ୱାରା ପ୍ରଭାବିତ ହୋଇଥିଲା । ନାରୀ କବି ବୃନ୍ଦାବତୀ ଦାସୀ ନିଜର ପୂର୍ଣ୍ଣତମ ଚନ୍ଦ୍ରୋଦୟର ବିଂଶତି ଅଧ୍ୟାୟରେ ବୈଷ୍ଣବ ଧର୍ମତତ୍ତ୍ୱ ବିଷୟକ ପ୍ରାୟ ୩୦ରୁ ବେଶୀ ସଂସ୍କୃତ ଗ୍ରନ୍ଥର ନାମୋଲ୍ଲେଖ କରିଛନ୍ତି । ସେ ହୋଇଛନ୍ତି ଭକ୍ତଚରଣଙ୍କର ପ୍ରାୟ ୫୦-୬୦ ବର୍ଷ ପୂର୍ବର କବି । ସୁତରାଂ ଭକ୍ତଚରଣଙ୍କୁ ଯେ ତହିଁରେ ଉଲ୍ଲିଖିତ ହୋଇଥିବା ବହୁ ଗ୍ରନ୍ଥ ଆଲୋଚନା କରିବାକୁ ପଡ଼ିଥିବ, ଅନୁମିତ ହେବା ସ୍ୱାଭାବିକ ।

— —

ମୁଦ୍ରାକର—ଶ୍ରୀ କିଶୋରଚନ୍ଦ୍ର ମିଶ୍ର, କବିତା ପ୍ରେସ, କଟକ—୧୯୫୨

# ଶୁଦ୍ଧିପତ୍ର

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୧ | ୧୨ | କହ୍ୱଳ | ବହ୍ୱଳ |
| ୯ | ୧୨ | ପ୍ରଶଂଶାସ୍ତୁ | ପ୍ରଶଂସଶାସ୍ତୁ |
| ୧୪ | ୧୦ | ଆଭ୍ୟନ୍ତରୀତା | ଆଭ୍ୟନ୍ତରୀଣ |
| ୧୭ | ୨୦ | ୧୮୨୩ | ୯୮୧୩ |
| ୩୦ | ୧୯ | ଅନୁଲେପ | ଅନୁଲେମ |
| ୩୨ | ୧୯ | ଭକ୍ତ × କର | ଭକ୍ତ × କର୍ |
| ୩୨ | ୨୨ | ରୋଗ | ଭୋଗ |
| ୩୩ | ୧୫ | ଜକ୍ତ | ଭକ୍ତ |
| ୩୪ | ୨ | ନିଜେ | ନିଜେ |
| ୩୫ | ୧୪ | ଯୋଶଦା | ଯଶୋଦା |
| ୩୯ | ୯ | ବକ୍ତିତ୍ୱ | ବ୍ୟକ୍ତିତ୍ୱ |
| ୪୦ | ୧୮ | କହୁଛନ୍ତି | କହୁଛନ୍ତି |
| ” | ୧୯ | ଅନୁଭୂତୀ ପରେ ଦୀର୍ଘ | ଦୀର୍ଘଅନୁଭୂତି ପରେ |
| ୪୫ | ୪ | ଚୈତନ | ଚୈତନ୍ୟ |
| ” | ୮ | ଉକ୍ତ | ଭକ୍ତ |
| ୪୭ | ୮ | କବି | କବି |
| ୪୮ | ୧୨ | କରାଇ ନ ଥିଲେ | କରାଇ ଥିଲେ |
| ” | ୧୩ | କରିଥିବା ପରି ଜଣାଯାଏ | କରି ଅଛନ୍ତି |
| ୫୩ | ୧୨ | ବର୍ଜିଶାସ୍ତୁ | ବର୍ଜଶାସ୍ତୁ |
| ” | ୨୦ | ନ ଥିବାର | ନ ଥିବାରୁ |
| ୬୭ | ୨୨ | ସାଙ୍ଗିତିକ | ସାଙ୍ଗୀତିକ |
| ୬୭ | ୨ | କାଳି | କାଳୀ |
| ” | ୩ | କାଳୀସ୍ତୁ | କାଳିସ୍ତୁ |
| ୬୮ | ୨ | ବନମାଳି | ବନମାଳୀ |
| ୭୨ | ୧୫ | ନ ରୁଚେ | ନ ରୁଚଇ |

# ଲେଖକଙ୍କର ପୁସ୍ତକ ମଧ୍ୟରୁ—

| | |
|---|---|
| ଉପନ୍ୟାସ ଓ ସେମାନଙ୍କର ସାହିତ୍ୟ | ୬। |
| ଅଳଙ୍କାର ସାହିତ୍ୟର କ୍ରମବିକାଶ | ଟ ୨୯ |
| ରସକଲ୍ଲୋଳ ସମୀକ୍ଷା | ଟ ୧୪ |
| କୁସୁମାଞ୍ଜଳି ଆଲୋଚନା | ଟ ୧୨ |
| ଚିଲିକା ବକ୍ଷରେ | ଟ° ୫ |
| ପ୍ରତ୍ୟୁଷ ବଳଭ ପ୍ରଦେଶ | ଟ° ୪୬ |
| ନାଟ୍ୟକଳା ଓ ଓଡ଼ିଆ ନାଟ୍ୟ ସାହିତ୍ୟ | ( ଯନ୍ତ୍ରସ୍ଥ ) |
| ବଙ୍ଗୋପସାଗରରେ ଝଡ଼ଝଞ୍ଜା | ( ” ) |

---

# ନିଆଁଖୁଣ୍ଟା ପ୍ରକାଶନ

| | |
|---|---|
| ହେ ମୋର କଲମ | ଟ° ୫। |
| ହାସ୍ପିଟାଲର ବିପ୍ଳବ | ଟ ୧୨ |
| ପାଲଟି ନୂଆ | ଟ° ୫ |
| ହଠାତ୍ ହାସ୍ପିଟାଲରେ | ଟ° ।/ |
| ଅସୁନ୍ଦରର ପ୍ରେମ | ଟ° ।/ |
| ପ୍ରେମର ପ୍ରତିଦ୍ୱନ୍ଦ୍ୱିତା | ଟ° । |
| ଆମେ ଦୁହେଁ ଓ ସେ ଦୁହେଁ | [ ଯନ୍ତ୍ରସ୍ଥ] |
| ମଦଦୋକାନର ଇତିହାସ | ” ) |
| ଏଇ ତ ଆମରି ଗାଁ | ( ” ) |
| ହସ୍ପିଟାଲରେ ଭଗବାନ ଦର୍ଶନ | ( ” ) |
| ଏମ୍. ଏଲ୍. ଏ. | ( ” ) |
| ଥିଏ ଯାହା ବୁଝିବ | ( ” ) |